

ପ୍ରଫେସର ଡଃ କମଳ କୁମାରୀ ପଟ୍ଟନାୟକ
[୦୯.୦୧.୧୯୩୬ - ୧୭.୧୨.୨୦୧୯]

# ଅଭୁଲା ସ୍ମୃତି

**NAVEEN PATNAIK**
**CHIEF MINISTER, ODISHA**



**STATE SECRETARIAT**
**BHUBANESWAR**

Dear Pragyan,

I am deeply shocked to hear about the passing away of your mother Prof. Kamal Kumari Patnaik. My deepest condolences to you and your family.

May God give you strength and fortitude to bear this great personal loss.

May the soul rest in peace.

(NAVEEN PATNAIK)

**PRAGYAN PATNAIK**
Cuttack.

Phone: 0674-2531100 (Off.), 0674-2591099 (Res.) Fax: 0674-2535100 (Off.), 0674-2590833 (Res.) E-mail: cmo@nic.in, twitter id: twitter.com/CMO_Odisha
Facebook id: facebook.com/CMO Odisha



# ପ୍ରଫେସର ଡଃ କମଳ କୁମାରୀ ପଟ୍ଟନାୟକ

{୦୯.୦୧.୧୯୩୬ - ୧୭.୧୨.୨୦୧୯}



# ବିଜ୍ଞାନ ପ୍ରଚାର ସମିତି

ଆମ୍ରପଲ୍ଲୀ, ଦୋଳମୁଣ୍ଡାଇ, କଟକ-୭୫୩୦୦୯

ପଞ୍ଜୀକରଣ ସଂଖ୍ୟା : ୧୧୨୬/୧୩୩, ୧୯୬୩-୬୪

(ସ୍ଥାପିତ : ୭ ଅଗଷ୍ଟ, ୧୯୪୯)

ପତ୍ର ସଂଖ୍ୟା :.......................... ତା : ୨୮.୧୨.୨୦୧୯

## ଶୋକ ପ୍ରସ୍ତାବ

ପ୍ରଫେସର ଡକ୍ଟର କମଳ କୁମାରୀ ପଟ୍ଟନାୟକଙ୍କର ପରଲୋକ ଓଡ଼ିଶା ଶିକ୍ଷା ଜଗତର ତଥା ବିଜ୍ଞାନ ପ୍ରଚାର ସମିତିର ଏକ ଅପୂରଣୀୟ କ୍ଷତି । ସେ ଥିଲେ ବିଜ୍ଞାନ ପ୍ରଚାର ସମିତିର ଆଜୀବନ ସଦସ୍ୟା । ସମିତିକୁ ସଶକ୍ତ କରାଇବାରେ ତାଙ୍କର ରହିଆସିଥିଲା ଗୁରୁତ୍ୱପୂର୍ଣ୍ଣ ଭୂମିକା । ବିଜ୍ଞାନକୁ ଓଡ଼ିଆ ଭାଷାରେ ଜନପ୍ରିୟ କରିବା ନିମନ୍ତେ ସେ ସତତ ବ୍ରତୀ ଥିଲେ ଓ ବହୁ ଲୋକପ୍ରିୟ ବିଜ୍ଞାନ ପୁସ୍ତକ ରଚନା କରିଥିଲେ । ଜଣେ ଧୂରୀଣ ଗବେଷିକା ଭାବରେ ମଧ୍ୟ ସେ ନିଜ ପାଇଁ ସୃଷ୍ଟି କରିପାରିଥିଲେ ଏକ ସ୍ୱତନ୍ତ୍ର ପରିଚିତି ।

ପ୍ରଫେସର ପଟ୍ଟନାୟକଙ୍କର ଅମର ଆତ୍ମା ସଦ୍‌ଗତି ଲାଭ କରୁ । ତାଙ୍କ ବିୟୋଗଜନିତ ବ୍ୟଥାକୁ ସହ୍ୟ କରିଦେବା ନିମନ୍ତେ ତାଙ୍କ ଶୋକସନ୍ତପ୍ତ ପରିବାରର ସଦସ୍ୟମାନଙ୍କୁ ଈଶ୍ୱର ଧୈର୍ଯ୍ୟ ଓ ସାହସ ପ୍ରଦାନ କରନ୍ତୁ ।

ନିରଞ୍ଜନ ପାତ୍ର
ସଂପାଦକ

ସୁଦର୍ଶନ ପଟ୍ଟନାୟକ
ସଭାପତି

ସଭାପତି
ପ୍ରଫେସର ଡା ସୁଦର୍ଶନ ପଟ୍ଟନାୟକ
ମୋ. ୯୪୩୭୦୨୦୬୪୨

ଉପସଭାପତି
ଡା ସୁବାସିନୀ ଲେଙ୍କା
ମୋ. ୯୮୬୧୪୨୨୨୨୨

ସମ୍ପାଦକ
ଶ୍ରୀ ନିରଞ୍ଜନ ପାତ୍ର
ମୋ. ୯୪୩୭୧୦୮୦୨୨

ଯୁଗ୍ମ ସମ୍ପାଦକ
ଶ୍ରୀମତୀ କବିତା ପାଟଶାଣୀ
ମୋ. ୯୪୩୭୨୬୮୫୩୮

କୋଷାଧ୍ୟକ୍ଷ
ଡା° ଧୀରେନ୍ଦ୍ର କୁମାର ବିଶ୍ୱାଳ
ମୋ. ୯୮୬୧୦୨୬୧୦୨

ପ୍ରକାଶନ ସମ୍ପାଦକ
ଡା ପଦନ କୁମାର ଜେନା
ମୋ. ୯୮୬୧୦୯୪୮୩୬

ବିଜ୍ଞାନାଲୋକ ସମ୍ପାଦକ
ଡା ବିଜୟ କୁମାର ପଟ୍ଟନାୟକ
ମୋ. ୯୪୩୯୦୦୩୩୩୦

କାର୍ଯ୍ୟନିର୍ବାହୀ ସଭ୍ୟ

ଡା°. ପ୍ରତାପ କୁମାର ସ୍ୱାଇଁ
ମୋ. ୯୮୬୧୦୪୬୮୫୦

ଡା. ପଦ୍ମନାଭ ବେହେରା
ମୋ. ୮୨୪୯୮୯୨୨୧୫

ଡ. ବୈଷ୍ଣବ ଚରଣ ସିଂହ
ମୋ. ୯୪୩୮୫୫୫୩୬୧

ଡ. ପ୍ରମୋଦ କୁମାର ମହାପାତ୍ର
ମୋ. ୯୮୬୧୨୪୯୨୦୨

ଡା. ତପନ କୁମାର ପାତ୍ର
ମୋ. ୯୪୩୭୨୭୩୭୧୭

# ଭୂମିକା

ଆମର ମାଆ ପ୍ରଫେସର ଡକ୍ଟର କମଳ କୁମାରୀ ପଟ୍ଟନାୟକଙ୍କ ଦେହାନ୍ତ ଆମକୁ ଗଭୀର ଭାବରେ ମର୍ମାହତ କରିଛି । ବାପାଙ୍କ ଦେହାନ୍ତ ପୂର୍ବରୁ ସେ ଅସୁସ୍ଥ ଥିଲେ ଏବଂ ପରେ ପରେ ଶଯ୍ୟାଶାୟୀ ହୋଇଯାଇଥିଲେ । କିନ୍ତୁ ସେ ଥିଲେ ଆମ ପ୍ରେରଣାର ଉତ୍ସ । ଆମେ ଜାଣିଥିଲୁ ସେ ସମୟର ପ୍ରତିକୂଳ ପରିସ୍ଥିତିରେ ଗତି କରୁଛନ୍ତି । କିନ୍ତୁ ଆମେ ସଂକଳ୍ପବଦ୍ଧ ଥିଲୁ, ତାଙ୍କର ଜୀବନ ପ୍ରକ୍ରିୟା କିପରି ଭାବରେ ସ୍ୱାଭାବିକ କରାଯାଇପାରିବ। ସେଥିପାଇଁ ସଂଘର୍ଷ ପ୍ରଥମ ଦିନକୁ ଦିନ ଆଧାରରେ ଚିକିତ୍ସା ଏବଂ ଶେଷ ସମୟରେ ମିନିଟ୍‌ରୁ ମିନିଟ୍ । ଗତ ପାଞ୍ଚବର୍ଷ ହେଲା ପ୍ରତ୍ୟେକ ଦିନ ଆମକୁ ହାବୁକା ମାରୁଥିଲା, କିଛି ଅଘଟଣ ହୋଇଯିବକି ? କିନ୍ତ ପ୍ରଭୁ ଜଗନ୍ନାଥଙ୍କୁ ସ୍ମରଣ କରି ଆମେ ଆଗେଇ ଚାଲିଥିଲୁ ଉତ୍ସାହିତ ହୋଇ ଯେ ଆମ ମାଆ ଯେତେ ଅସୁସ୍ଥ ହେଲେ ମଧ୍ୟ ପୁଣି କିଛିମାତ୍ରାରେ ଉପଶମ ପାଇବେ । ଆଜି ପଛକୁ ଚାହିଁଲେ ବିଶ୍ୱାସ କରିହେଉନାହିଁ । କେତେ ଅନିଶ୍ଚିତତା ମଧ୍ୟରେ ଆମେ ସମୟ କାଟିଛୁ । ବେଳେବେଳେ ମାଆଙ୍କ ମୁଖରେ ସ୍ମିତହାସ୍ୟ ଆମକୁ ପ୍ରେରଣା ଦେବାକୁ ସକ୍ଷ୍ୟମ ହେଉଥିଲା ମାଆଙ୍କ ପାଇଁ ଆଉ କିଛି କରିହେବ । କେବଳ ଏଲୋପ୍ୟାଥି ଚିକିତ୍ସାରେ ଆମେ ସୀମିତ ନଥିଲୁ । ଆୟୁର୍ବେଦ, ହୋମିଓପ୍ୟାଥି, ଆକ୍ୟୁପେସ୍‌ର ରେକି ଇତ୍ୟାଦି । ବିଭିନ୍ନ ସମୟରେ ଆମେ ତା'ର ପ୍ରୟୋଗ କରିଛୁ ଏବଂ କିଛି ମାତ୍ରାରେ ତାର ଫଳ ମଧ୍ୟ ପାଇଛୁ ।

ଏହି ପରିପ୍ରେକ୍ଷୀରେ ଆମେ କିଛି ସୁନାମଧନ୍ୟ ଡାକ୍ତରଙ୍କ ପାଖରେ ଆମେ କୃତଜ୍ଞ । ଗତ ପାଞ୍ଚବର୍ଷ ହେଲା ଆମେ ଦୃଢ଼ ନିଷ୍ପତ୍ତିରେ ଅଟଳ ଥିଲୁ ଯେ ଆମେ ସମସ୍ତ ବ୍ୟବସ୍ଥା ଘରେ କରିବୁ ତାଦ୍ୱାରା ମାଙ୍କର ଚିକିତ୍ସା ଯେପରି କିଛି ଅବହେଳା ହେବନାହିଁ । ଡାକ୍ତର କୃଷ୍ଣ କୁମାର ଜାଜୋଡ଼ିଆ ଗତ ଦଶ ବର୍ଷ ଧରି ଆମର ଘରୋଇ ଡାକ୍ତର । ଆମେ ତାଙ୍କ ପାଖରେ ବହୁମାତ୍ରାରେ ଋଣୀ । ଖରା, ବର୍ଷା, ଶୀତକୁ ଖାତିର ନକରି ସେ ପହଞ୍ଚି ଯାଆନ୍ତି ତତ୍‌କ୍ଷଣାତ୍ ଫୋନ୍ ପାଇବା ପରେ । ମଧ୍ୟରାତ୍ରୀରେ ମଧ୍ୟ ଆମେ ତାଙ୍କୁ ବହୁତ ଫୋନ୍ କରିଛୁ । ସେଇ ଅଧିକାର ମଧ୍ୟ ସେ ଆମକୁ ଦେଇଥିଲେ । କାରଣ ସେ ଜାଣିଥିଲେ, ଉଭୟ ଆମର ବାପା ଓ ମା'ଙ୍କ ସ୍ୱାସ୍ଥ୍ୟର ଅବସ୍ଥା । ସେହିପରି ପଲ୍‌ମୋନାରୀ ବିଭାଗର ପ୍ରଫେସର ଡାକ୍ତର ଜ୍ୟୋତି ପଟ୍ଟନାୟକ । ଆମ ପାଇଁ ଜ୍ୟୋତି ଭାଉଜ । ଉଭୟ ବାପା ଓ ମାଆଙ୍କର ସ୍ୱାସ୍ଥ୍ୟ ସମ୍ବନ୍ଧୀୟ ସମସ୍ତ କଥା ବୁଝିଛନ୍ତି । ବିଶେଷତଃ ଶ୍ୱାସନଳୀ ସଂକ୍ରମଣରୁ ବହୁତ ଥର ବାପା ଓ ମାଆଙ୍କୁ ନିରୋଗ କରିଛନ୍ତି । ସେଥିପାଇଁ ଆମେ ତାଙ୍କର ନିର୍ଦ୍ଦେଶରେ ଜଟିଳ ଚିକିତ୍ସା ଧୈର୍ଯ୍ୟର ସହ କରିଛୁ । ଆମେ ଜ୍ୟୋତି ଭାଉଜ ଓ ସଞ୍ଜିତ ଭାଇ (ଡାକ୍ତର ସଞ୍ଜିତ୍ ପଟ୍ଟନାୟକ)ଙ୍କ ପାଖରେ କୃତଜ୍ଞ ।

ଆମର ବନ୍ଧୁ ଡାକ୍ତର ଦୀପକ ରଞ୍ଜନ ଦାସ, ହୃଦ୍‌ରୋଗ ବିଭାଗର ଜଣେ ଅଭିଜ୍ଞ ଡାକ୍ତର । ବହୁତଥର ଆମ ଘରକୁ ଆସିଛନ୍ତି । ତାଙ୍କ ପରାମର୍ଶରେ ଉଭୟ ବାପା ଓ ମାଆ ସଠିକ୍ ଚିକିତ୍ସା ପାଇଥିଲେ ।



ୟୁରୋଲଜୀ ବିଭାଗର ଡାକ୍ତର ସଞ୍ଜୟ ଚୌଧୁରୀ । ମାଆଙ୍କର ଶେଷ ଏକ ବର୍ଷ ପରିସ୍ରା ସମ୍ବନ୍ଧୀୟ ସଂକ୍ରମଣକୁ ବହୁମାତ୍ରାରେ ରୋକିବାରେ ସେ ସଫଳ ହୋଇଥିଲେ । ରାଣୀହାଟରେ ଅବସ୍ଥିତି ରାଧିକା ମେଡ଼ିସିନ୍ ଷ୍ଟୋରର ମହନ୍ତ ବାବୁ ହିଁ ଡାକ୍ତର ସଞ୍ଜୟ ଚୌଧୁରୀଙ୍କ ସହ ଆମର ଯୋଗସୂତ୍ର ସ୍ଥାପନ କରିଥିଲେ । ଆମେ ଡାକ୍ତର ସଞ୍ଜୟ ଚୌଧୁରୀ ଓ ମହନ୍ତ ବାବୁଙ୍କ ପାଖରେ କୃତଜ୍ଞ ।

ଡାକ୍ତର ଅମୀୟ ପରିଜା । ପେସାରେ ଶିଶୁ ଡାକ୍ତର ହେଲେ ମଧ୍ୟ ଶରୀର ଓ ରୋଗ ନିଦାନରେ ସିଦ୍ଧହସ୍ତ । ବହୁତ ସମୟରେ ତାଙ୍କର ପରାମର୍ଶ ମାଆଙ୍କର ଚିକିତ୍ସାରେ ସହାୟକ ହୋଇଥିଲା ।

ଗତ ସାତ - ଆଠ ବର୍ଷ ଆମ ପାଇଁ କଠିନ ସମୟ ଥିଲା । ଆମେ ଶହେରୁ ଉର୍ଦ୍ଧ୍ୱ ଡାକ୍ତରଙ୍କ ସଂସ୍ପର୍ଶରେ ଆସିଛୁ । ବିଶେଷତଃ ଡାକ୍ତର ଯଦୁନାଥ ପ୍ରସାଦ ଦାସ, ଡାକ୍ତର କୃପାସିନ୍ଧୁ ପଣ୍ଡା, ଡାକ୍ତର ଲକ୍ଷ୍ମୀକାନ୍ତ ସାହୁ, ଡାକ୍ତର ସି.ବି.କେ ମହାନ୍ତି, ଡାକ୍ତର ଅମୀୟ ରାୟ, ଡାକ୍ତର ପ୍ରତିଭା ସେନ୍ । ନାମ ଅନେକ ସେମାନଙ୍କୁ ଆମେ କୃତଜ୍ଞତା ଜ୍ଞାପନ କରୁଛୁ । କହିବା ବାହୁଲ୍ୟ, ଏଠାରେ ଆମେ ଡାକ୍ତରମାନଙ୍କୁ କୃତଜ୍ଞତା ଜ୍ଞାପନ କରୁଛୁ କାରଣ ସେମାନଙ୍କର ସାହାଯ୍ୟ ଓ ସହଯୋଗରୁ ଆମର ବାପା ଓ ମାଆଙ୍କ ଚିକିତ୍ସା ଆମ ଘରେ ସମ୍ଭବପର ହୋଇଥିଲା ।

ସେହିପରି ମାଆଙ୍କର ଫିଜିଓଥେରାପିଷ୍ଟ ମୌନାକ୍ ବାବୁ ଓ ଫାର୍ମାସିଷ୍ଟ ବିକାଶଙ୍କ ଜରୁରୀ ପରିସ୍ଥିତିରେ ଉପସ୍ଥିତ ରହି ମାଆଙ୍କ କ୍ରିଟିକାଲ କେଆରରେ ନିଜକୁ ସମ୍ପୂର୍ଣ୍ଣ ଭାବରେ ସଂଶ୍ଳିଷ୍ଟ କରିବା କିଛି କମ୍ କଥା ନୁହେଁ ।

ଉଭୟ ବାପା ଓ ମା' ବିଭିନ୍ନ ସମୟରେ ଅନେକ ସେବକ ଓ ସେବିକା ସଂସ୍ପର୍ଶରେ ଆସିଥିଲେ । ଆମେ କିଛି ସେବକ ଓ ସେବିକାଙ୍କୁ ସ୍ମରଣ କରିବା ପାଇଁ ଉଚିତ ମନେ କରୁଛୁ । ଧର୍ମେନ୍ଦ୍ର, ପାଣ୍ଡବ, ସୁନୀଲ, ପୁନମ୍, ଅଞ୍ଜଳୀ, ଭଗବାନ, ଚିକୁ, ପ୍ରଭା, ସ୍ମିତା ଇତ୍ୟାଦି । ଆମେ ପ୍ରଭୁଙ୍କ ପାଖରେ ପ୍ରାର୍ଥନା କରୁଛୁ ଆମ ବାପା ଓ ମାଆଙ୍କ ଆଶୀର୍ବାଦ ସେମାନଙ୍କ ଉପରେ ଥାଉ । ଆଜି ସେମାନେ ଯୋଉଠି ଥାଆନ୍ତୁ ମଧ୍ୟ ସେମାନେ ମଣିଷ ପରି ମଣିଷ ହୁଅନ୍ତୁ ।

ୟୁନିଭର୍ସର ଉମେଶ ଭାଇ ଓ କିଶୋର ବାବୁ । ଉଭୟ ମୋ' ବାପା ଓ ମାଆଙ୍କ ସୁଖ ଦୁଃଖର ସାଥୀ । ଅଶୀ ଓ ନବେ ଦଶକରେ ଉମେଶ ଭାଇ ବାପାଙ୍କର ପାଖେ ପାଖେ ରହି ସବୁକାର୍ଯ୍ୟ ଠିକ୍ ଭାବରେ କରିପାରୁଥିଲେ । ବାପାଙ୍କର ଦେହ ଖରାପ ସମୟରେ ସେ ଗୁରୁଦାୟିତ୍ୱ ନିଷ୍ଠାର ସହ ନିର୍ବାହ କରିଛନ୍ତି । ସେହିପରି କିଶୋର ବାବୁଙ୍କ ଭୂମିକାସହ ମାଆଙ୍କ ଶେଷ ଦୁଇବର୍ଷ ପାଇଁ ବହୁତ ଗୁରୁତ୍ୱପୂର୍ଣ୍ଣ ଥିଲା । ବିଶେଷତଃ ଆମମାନଙ୍କର ଅନୁପସ୍ଥିତିରେ ସେ ସେବକ ଓ ସେବିକାମାନଙ୍କୁ ଉଚିତ ପରାମର୍ଶ ଦେଉଥିଲେ । ତା'ଦ୍ୱାରା ଆମର ମାଆ ଠିକ୍ ସେବା ପାଇପାରୁଥିଲେ । ଆମେ ଉମେଶ ଭାଇ ଓ କିଶୋର ବାବୁଙ୍କୁ ଆନ୍ତରିକ ଧନ୍ୟବାଦ ଦେଉଛୁ ।





ଆମେ ପିଲାଦିନରୁ ଦେଖିଆସିଛୁ, ଆମର ମାଆଙ୍କୁ ତାଙ୍କର ବନ୍ଧୁଜନ ଓ ଛାତ୍ରଛାତ୍ରୀ କେତେ ସ୍ନେହ, ଆଦର ଓ ସମ୍ମାନ କରନ୍ତି । ସେ ଉଚ୍ଚଶିକ୍ଷିତା ହେଲେ ମଧ ତାଙ୍କର ନମ୍ରତା ଓ କୋମଳତା ସମାଜରେ ତାଙ୍କର ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିପାରିଥିଲା । ଏହାକୁ ଆୟୁଧ କରି 'ଅଭୁଲା ସ୍ମୃତି'ର ପରିକଳ୍ପନା । ଚାହୁଁ ଚାହୁଁ ତାଙ୍କରି ସମ୍ପର୍କିତ ବିୟୋଗାନ୍ତକ ଲେଖା ଆସି ପହଞ୍ଚିଗଲା । ଆମର ଉଦ୍ଦେଶ୍ୟ କଷ୍ଟ ହେଲେ ମଧ ପୁସ୍ତକଟି ସଂକଳିତ ହେବ । ଆଗାମୀ ଦିନରେ 'ଅଭୁଲା ସ୍ମୃତି' ହିଁ ମାଆଙ୍କ ସମ୍ବନ୍ଧୀୟ ସ୍ମୃତି ସାଉଁଟିବା ପାଇଁ ପ୍ରକୃତ ପାଥେୟ । ଆମେ ମାଆଙ୍କୁ ସବୁଦିନ ପାଇଁ ହରାଇଛୁ । କିନ୍ତୁ ସେ ଜୀବିତ ତାଙ୍କୁ ଅନ୍ତରର ସହ ଭଲ ପାଉଥିବା ତାଙ୍କର ସହକର୍ମୀ, ସମସାମୟିକ ବ୍ୟକ୍ତି ବିଶେଷ, ଛାତ୍ରଛାତ୍ରୀ ଓ ପରିବାରର ସଦସ୍ୟଙ୍କ ହୃଦୟରେ । ଖୁବ୍ କମ୍ ସମୟରେ ଏହା ସମ୍ଭବ ହୋଇପାରିଛି । ଏଥିରେ ଆମର ଭାଇ (ମାମୁଁଙ୍କ ପୁଅ) ଲିଓର ଭୂମିକା ବହୁତ । ବହିର କଭର ଡିଜାଇନ୍, ଫଟୋ କମ୍ପ୍ୟୁଟର କାମରେ ଲିଓଙ୍କ ନିପୁଣତା ଯେତେ କହିଲେ ବି କମ୍ । ସେହିପରି ଅଭିଜ୍ଞ କିଶୋର ବାବୁ ଏହି ବହିର ସଂକଳନ ପାଇଁ ଗୁରୁଦାୟିତ୍ୱ ସୂଚାରୁ ରୂପେ ନିର୍ବାହ କହିଛନ୍ତି । ଲିଓର ସ୍ତ୍ରୀ ଏକତା ଓ ବର୍ଷାନା ମଧ ବହୁତ ସମୟ ଦେଇଛନ୍ତି । ବହିର ସଂକଳନ କରିଛନ୍ତି ପୁନମ୍ ଗ୍ରାଫିକ୍ସ । ଏହାର ପୃଷ୍ଠପୋଷକ ସୌମେନ୍ଦ୍ର ଆମର ଅନୁରୋଧକୁ ରଖିଥିବାରୁ ଆମେ ତାଙ୍କୁ କୃତଜ୍ଞତା ଜଣାଉଛୁ । ଏତେ କମ୍ ସମୟରେ ଲେଖାଗୁଡ଼ିକୁ ତନ୍ନତନ୍ନ କରି ଦେଖିବା ସମ୍ଭବପର ହେଲାନାହିଁ । ବହିରେ ଯଦି ତ୍ରୁଟିବିଚ୍ୟୁତି ରହିଯାଇଛି, ସେଥିପାଇଁ ଆମେ ଦୁଃଖିତ । ଆମେ ଆଶାକରୁଛୁ ବହିଟି ଭବିଷ୍ୟତ ପିଢ଼ିଙ୍କୁ କିଛିମାତ୍ରାରେ ଅନୁପ୍ରାଣିତ କରିବ । ମାଆଙ୍କ ବିୟୋଗରେ ଶ୍ରଦ୍ଧାଞ୍ଜଳି ଜଣାଇଥିବା ସମସ୍ତଙ୍କ ନିକଟରେ ଆମେ କୃତଜ୍ଞ ।

**ବ୍ୟାପ୍ତି ପଟ୍ଟନାୟକ**

୭, ରାଷ୍ଟ୍ରଭାଷା ରୋଡ଼, କଟକ-୧

◆◆◆



# ନାଇଣ୍ଟି

ଡ଼. ବିଜୟ କୁମାର ନନ୍ଦ

ଉଣେଇଶ ସହ ଏକାବନ ମସିହା । ରେଭେନ୍ସା କଲେଜକୁ ପ୍ରବେଶ କଲେ ଶହେ ଛଅସ୍ତରି ଜଣ ଛାତ୍ରଛାତ୍ରୀ ଆଇ ଏସ ସି କ୍ଲାସ୍‌ରେ । ତା' ଭିତରେ ଥିଲେ ପନ୍ଦର ଜଣ ଛାତ୍ରୀ । ସେମାନଙ୍କ ଭିତରେ ତୁମକୁ ଚିହ୍ନିଥିଲି କମଳ ରୋଲ୍ ନମ୍ବର ନାଇଣ୍ଟି ବା ନବେ ଭାବରେ । ଜଣେ ଗୋରୀ ତନୁ ପାତଳୀ ଝିଅ। ସାଧାରଣ ଶାଢ଼ୀ ଖଣ୍ଡେ ପିନ୍ଧି ଆସିବ । ଶିକ୍ଷକ ପ୍ରବେଶ କଲାପରେ ସଙ୍ଗିନୀମାନଙ୍କ ସହ ଆସି ଆଗଧାଡ଼ିରେ ବସିବ। ଛ' ନମ୍ବର ଗ୍ରୁପ୍‌ରେ ବାୟୋଲଜି ଗ୍ରୁପରେ ବେଙ୍ଗ କାଟିବ । ଅତି ଶାନ୍ତଶିଷ୍ଟ । ଦୁଇ ବର୍ଷ ତୁମକୁ ଦେଖି ଆସିଛୁ । କଥା ଗପିବାର ସୁଯୋଗ ନାହିଁ । ପରିଚୟ ସେହି ରୋଲ୍ ନମ୍ବର ଜରିଆରେ । ପାଞ୍ଚଜଣ ସଙ୍ଗିନୀ ମେଡ଼ିକାଲ କଲେଜକୁ ପଢ଼ିବାକୁ ଆସିଲେ ଆମ ସହ । କାହିଁ ସେମାନଙ୍କ ଭିତରେ ତୁମେ ତ ନଥିଲ କମଳ ! କିଏ ଜଣେ ବନ୍ଧୁ କହିଲେ, ତୁମେ 'ବଟାନି'କୁ ଆଦରି ନେଲ ।

ବହୁତ ବର୍ଷ ପରେ ଶୁଣିଲି ବିପ୍ଳବୀ ଗିରିଜାଭୂଷଣଙ୍କ ପତ୍ନୀ ବନିଯାଇଛ। କେମିତି ଅଡୁଆ ଅଡୁଆ ଲାଗିଲା। ଜେନାପୁର ଅଞ୍ଚଳରେ ବିଲ ଭିତରେ ଲୁଚୁଥିବା କମ୍ୟୁନିଷ୍ଟ ଶେଷରେ ପ୍ରେମ କଲେ ତୁମପରି ଜଣେ ଝିଅକୁ ? ଚଳାଇବେ କିପରି ? କେତେ ସହଜରେ ତାଙ୍କୁ ନାଲି ପତାକାତଳୁ ଓହ୍ଲାଇ ସାଧୁ କରି ଥୋଇଦେଲ ଜଣେ ସମାଜସେବୀ ଭାବରେ ? ସେ ଗଢ଼ିଲେ ୟୁନିଭର୍ସ । ସାପ୍ତାହିକ ଆଲୋଚନା ସଭା । କେତେଥର ଯାଇଛି । ଦିନେହେଲେ ତୁମକୁ ସେ ସଭାରେ ଦେଖିଥିଲା ପରି ମନେପଡୁନି ! ତୁମେ ବାଛିନେଇଥିଲ, ଘର ଅଧାପନା ଓ ସେବା । କିଏ ତୁମକୁ ସେଥିରୁ ବିଚ୍ୟୁତ କରିବ ? ଗୋଟିଏ ଦୁର୍ଦ୍ଦାନ୍ତ ସିଂହକୁ ମେଷ ଶାବକ କରିବାର ସାହସ ତୁମେ ହିଁ କରିପାରିଲ ନିଜର ଇଚ୍ଛାଶକ୍ତି ବଳରେ । ଖବରକାଗଜରୁ ସମୟ କାଢ଼ି, ରୋଗୀମାନଙ୍କୁ ଭଲ କରିବାକୁ କେମିତି ଏ ବିଦ୍ୟା ହାସଲ କଲ ବହି ଭିତରୁ ? ଏତିକି କାମ କରିବାକୁ ସମୟ କୋଉଠୁ କରି ପାରିଲ ? ସାଲ୍ୟୁଟ୍ କରିବି ନା ନମସ୍କାର କରିବି ? ଉଭୟରୁ କେଉଁଟାକୁ ଗ୍ରହଣ କରିବା ସ୍ଥାନରୁ ତୁମେ ଯେ ଆହୁରି ଉର୍ଦ୍ଧ୍ୱରେ ! ମଥାରେ ତୁମର ବିରାଟ ସିନ୍ଦୂର ଟୋପା । ପାଟି ଭିତରେ ମୋଟା ପାନଖିଲ । ସେହି ଅବସ୍ଥାରେ ତୁମକୁ ଦେଖିଲି କମଳ । ୟୁନିଭର୍ସ ଆଗ ପଡ଼ିଆରେ । ଏହା ଭିତରେ କେବେ କମଳରୁ କମଳ ଅପା ବନିଯାଇଛ ମୋର ଅଜଣାରେ ।

ଗିରିଜାଭୂଷଣଙ୍କ ଜନ୍ମଦିନ । ତୁମ ଆଶୀର୍ବାଦରେ ନିମନ୍ତ୍ରଣ କରାଇଛ ଆମପରି କେତେ ବନ୍ଧୁ, ପ୍ରଶଂସକ ଓ ସହକର୍ମୀଙ୍କୁ । ମଞ୍ଚରେ ନେତାଗଣ । ଭାଷଣରେ ପୋତି ପକାଇଛନ୍ତି ଗିରିଜାଙ୍କୁ । ମନାସତ୍ତ୍ୱେ ବଢ଼େଇ ଦେଇଛନ୍ତି ପୁଷ୍ପଗୁଚ୍ଛ । ତୁମେ ସଭାମଧ୍ୟରେ ବସିଛ ଫୁଲତୋଡ଼ାଯାକ ଗୋଟେଇ ଆଣିବାକୁ ? ଦିପଦ ପ୍ରଶଂସାର ଉତ୍ତର ଦେବାକୁ ? ନା । ବସିଛ ପଛ ଧାଡ଼ିରେ ଗୋଟିଏ ଚୌକିରେ । ପାଖରେ ଯାଇ



ବସିବାର ସୁଯୋଗ ପାଇଲି । ଗପିଗଲେ କେତେଦିନର ପୁରୁଣା କଥା । ହସି ହସି ବଖାଣିଲ ୧୯୫୧ର ଦରମା ବଢ଼ା ଆନ୍ଦୋଳନ, ମୁଁ କେମିତି ଫିଜିକ୍ସ ଲେକ୍‌ଚର ଥିଏଟର ଆଗରେ ପିକେଟିଂ କରି ତରଣ ଅଧ୍ୟାପକ ଜୟନ୍ତ ମହାପାତ୍ରଙ୍କୁ ଛାଡ଼ିନଥିଲି ଭିତରକୁ । ତୁମେ ତ ଦେଖିନଥିଲ । ଏତେ ପଛଦିନର କଥା ମନେ ରଖିଛ କେମିତି ? ସେଦିନ ତୁମକୁ ପ୍ରଶ୍ନ କରିଥିଲି ଏତେଗୁଡ଼ାଏ ପାଠ ଭିତରେ 'ବଟାନିକାଲ' ନାମ ମଧ୍ୟରେ ? ଆଜି ତୁମ ନଥିବାରେ ମନେ ପଡ଼ିଯାଉଛି । ଅଧ୍ୟକ୍ଷ ଭାବରେ ତୁମ ବିଭାଗକୁ ଦିନେ ଯାଇଥିଲି ମେଡ଼ିକାଲ ଏଣ୍ଟ୍ରାନ୍ସ ପ୍ରଶ୍ନର କିଛି ସଠିକ ଉତ୍ତର ଯୋଗାଡ଼ କରିବାକୁ । ତୁମେ କୌଣସି କାମରେ ନଥିଲ । ତୁମର ସହକର୍ମୀଗଣ କହିଥିଲେ ତୁମେ କିପରି ଔଷଧୀୟ ବୃକ୍ଷ ବଗିଚାରେ ଲଗାଇଛ ।

ଶୁଣିଥିଲି ରୋଗରେ ପଡ଼ିଥିଲ । ମୋର ୟୁନିଭର୍ସିଟିକୁ ଯିବା ବହୁତ କମିଗଲାଣି । ତୁମକୁ ରୋଗଶଯ୍ୟାରେ କେବେ ଦେଖିବାକୁ ଯାଇନି । ଅତୀତର ଚଳଚଞ୍ଚଳ 'ନାଇଣ୍ଟି'ଙ୍କୁ କେମିତି ଦେଖିଥାଆନ୍ତି ଖଟ ଉପରେ ନିସ୍ତେଜହୋଇ ପଡ଼ିଥିବା ଅବସ୍ଥାରେ ? ବଢ଼ଇେ ଦେଇଥାନ୍ତି ଫୁଲ, ଯାହା ଗିରିଜାଭୂଷଣଙ୍କ ନିୟମର ବାହାରେ ? ଯାଅ କମଳା ଉପରେ ଗିରିଜା ବ୍ୟସ୍ତହୋଇ ପଡ଼ିବଣି । ତୁମେ ତ ତା'ର ଅସଜଡ଼ା ସଂସାରକୁ ବର୍ଷ ପରେ ବର୍ଷ ଚଳେଇ ଦେଲ । ମୋର କଳ୍ପନାରୁ (ବନ୍ଧୁମାନଙ୍କ ସହ) 'ନାଇଣ୍ଟି' ଲିଭିବନି ।

◆◆◆





# OBITUARY

( Dr Kamal Kumari Patnaik)

**Dr. Debakanta Mishra**

I received a sad message from Sri Kishore Tripathy on 17. 12. 2019 in my cellphone that Dr. Kamal Kumari Patnaik has left for her heavenly abode at about 3.30 pm. Of course, I knew that she was suffering from gerontological disorders for the past few months and her devoted son Byapti was looking after her treatment at their residence. Her sad demise is a painful shock to me and my wife as she was a family friend and I have treated her as one of my elder sisters for the past few decades."

She was my colleague at Ravenshaw College from the early sixties for a good number of years. Though I had a facial acquaintance with her as a colleague, I became intimate with her after I became vice- principal of Ravenshaw College. My close friend and well wisher Sri Chittaranjan Das ( Chitta Bhai) persuaded me at that time to become closely associated with the cultural activities of the renowned cultural organisation "The Universe" of which Sri Girija Bhusan Patnaik was the founder and the chief organiser. Dr Kamal Kumari Patnaik, whom I have henceforth addressed as ' Kamal Apa' was the beloved wife of Sri G.B. patnaik. In due course of time I could become a core member of a group which was arranging various state level , national and international level seminars at Universe. I very often delivered lectures and also acted either as a moderator or an editor in all such deliberations. Kamal Apa very much appreciated my literary activities and speeches at Universe and always encouraged me in her unique affectionate way to utilise the best of my abilities for the enrichment of our indigenous culture.

When she came to Ravenshaw College usually by a car, she used to first get down from her car in front of the College Office and after finishing her work in the Office, she invariably visited my office room and offered me two 'paans', as she knew that I was very fond of chewing paan. When she became professor and head of the Department of Botany, she used to arrange various PG seminars, inviting guests from within and outside the state. I had attended many such seminars, being invited by her, to deliver lectures. In due course of time our friendship became so intimate she used to come to my quarters within the college campus and we exchanged our views on latest discoveries and inventions in science. Both Mr/ Mrs Patnaik grace the marriage ceremony of my daughter which was held in the college quarters and Kamal Apa helped us in various ways to arrange this function."

Besides being an eminent life scientist and an ideal teacher, she also devoted her intellectual and creative abilities to enrich Odia literature. I have read many of her articles, published in daily Samaj , dealing with environment and ecology. She has published a good number of books to popularise life science in Odia, thereby establishing herself as a



renowned author in Odia. She used her expertise to detect the medicinal properties of various plants and as a selfless social worker, she used to treat patients at The Universe, particularly patients suffering from ' asthma'. "At The Universe, I could find her as a very active and silent worker, who could take care of the interior decoration of the of the lecture halls and the garden of the campus. She has left her forceful imprint in the establishment of of the three closely related institutions, namely, Universe, Printoverse and Multiverse. She , in fact, acted as an effective partner along with her husband to see the Universe as a cultural organisation could gain national and international repute. "

Because of her sad demise, Odisha has lost an eminent life scientist, a renowned populariser of science and an ideal educational administrator. I feel extremely sorry for not being able to pay my last respects to her departed soul directly because of my physical indisposition, but I pray God, let her soul be rest in peace. I also deeply sympathise with the members of the bereaved family for this irreparable loss.

◆◆◆





# ଜଣେ କ୍ରାନ୍ତିକାରୀ ମହିଳାଙ୍କ ସ୍ମୃତିରେ

**ଡକ୍ଟର ରାଜେନ୍ଦ୍ର ନାରାୟଣ ଦାସ**

ପ୍ରତ୍ୟେକ ପ୍ରବାସୀ ଜୀବନରେ ବୋଧହୁଏ ସବୁଠାରୁ ଅଧିକ ବ୍ୟଥା ହେଲା ନିଜର ପରିଜନମାନଙ୍କଠାରୁ ଦୂରେଇ ରହିବାର ଅବସ୍ଥା । ଏହି ବ୍ୟଥାକୁ କାହାକୁ ଦେଖାଇ ହୁଏ ନାହିଁ କି କହି ହୁଏ ନାହିଁ, କେବଳ ଭୋଗିବାକୁ ହିଁ ହୁଏ । ଯେତେବେଳେ ଦେଶରୁ କେଉଁ ଆତ୍ମୀୟସ୍ୱଜନଙ୍କ ଚାଲିଯିବାର ଖବର ଆସେ, ସେତେବେଳେ ପାଦତଳୁ ପୃଥିବୀ ଖସିଗଲା ଭଳି ଲାଗେ । ଏପରି ସମୟରେ କିଛି ନ କରିପାରିବାର ପଶ୍ଚାତାପ ବାରମ୍ବାର ଦଂଶନ କରେ । ତା’ ଭିତରୁ ପ୍ରବାସୀ ନିଜକୁ କୌଣସି ପ୍ରକାର ମୁକୁଳାଏ ଓ ଆଗକୁ ପାଦ ବଢ଼ାଏ ।

ପରିଣତ ବୟସରେ ଦେହାବସାନ ଶାରୀରିକ ବନ୍ଧନ ଓ ପୀଡ଼ାରୁ ଏକ ସ୍ୱାଭାବିକ ମୁକ୍ତି । କେହିହେଲେ ଏହି ମର ସଂସାରରେ ଚିରକାଳ ରହେ ନାହିଁ । କିଏ ଅଳ୍ପ ସମୟ ଜୀବିତ ରହେ ତ କାହା ଭାଗ୍ୟରେ ଭଗବାନଙ୍କର ଦୀର୍ଘ ଆଶୀର୍ବାଦ ଥାଏ । କିନ୍ତୁ ପରଲୋକ ବ୍ୟକ୍ତି ନିଜର ସାଧନା ଯୋଗୁଁ ଉତ୍ତର ପୁରୁଷକୁ ଦୀର୍ଘକାଳ ସୁରଭିତ ଓ ଆଦର୍ଶରେ ଉଦ୍‌ବୋଧିତ କରିଥାନ୍ତି ।

ସେହିପରି ଜଣେ ମହିୟସୀ ମହିଳା ଥିଲେ ପ୍ରଫେସର କମଳ କୁମାରୀ ପଟ୍ଟନାୟକ । ପ୍ରବାଦପୁରୁଷ ଗିରିଜା ଭୂଷଣ ପଟ୍ଟନାୟକଙ୍କର ସହଧର୍ମିଣୀ । କଥା ସରେ ନାହିଁ, ଭାବନାର ଅନ୍ତ ନାହିଁ । କମଳ ଅପା ଓ ଗିରିଜା ଭାଇ ଦୁହିଁଙ୍କ କଥା ଲେଖିବସିଲେ ଗୋଟିଏ ବହି ଲେଖାଯାଇପାରିବ । କମଳଅପା ଥିଲେ ଗିରିଜା ଭାଇର ସାଧନା ପଥର ଅନୁଗାମିନୀ ।

ପ୍ରଫେସର କମଳ କୁମାରୀ ପଟ୍ଟନାୟକ ସମ୍ପ୍ରତି ଏକ ନାଁ ମାତ୍ର ନୁହେଁ; ଏକ ଅନୁଷ୍ଠାନ ଓ ଏକ ମମତା । କାହାକୁ କେଉଁ କ୍ଷେତ୍ରରେ କିପରି ବ୍ୟବହାର କରିବାକୁ ହେବ ତାହା ସେ ଭଲ ରୂପେ ନିଜ ଆଚରଣରେ ଦେଖାଉଥିଲେ । ତାଙ୍କର ବେଦନା ନିଜ ପାଇଁ ନଥିଲା, ଅନ୍ୟମାନଙ୍କ ପାଇଁ ଥିଲା । ସେ ଜୀବନରେ କେତେ କେତେ ସଂକଟ ଭିତରେ ଗତି କରିଥିଲେ ମଧ୍ୟ କେବେହେଲେ ବିଚଳିତ ହେଉନଥିଲେ । ଅଧ୍ୟାପିକା ହିସାବରେ ସେ ଜ୍ଞାନ ଆହରଣରେ ଓ ଜ୍ଞାନ ବିତରଣରେ ସୁଦକ୍ଷା ଥିଲେ । ଏସବୁକୁ ନେଇ ତାଙ୍କର ଜୀବନ ଏକ ପରିପୂର୍ଣ୍ଣ ବ୍ୟକ୍ତିତ୍ୱରେ ଦୀପ୍ତିମୟୀ ଥିଲା ।

ତାଙ୍କଭଳି ଓ ଗିରିଜା ଭାଇ ଭଳି ମଣିଷଟିଏ ଆଜି ସାରା ଓଡ଼ିଶାରେ ଖୋଜିଲେ ମିଳିବେ ନାହିଁ । କମଳ ଅପା ଥିଲେ ଜଣେ ଅତି ଭଲ ତଥା ଅଜାତଶତ୍ରୁ ମଣିଷ, ଯାହା ହେବା ପାଇଁ ଆମେ ସମସ୍ତେ ଚେଷ୍ଟିତ । ସେଇ ଭଲ ମଣିଷକୁ ହରେଇଦେବା ହିଁ ଆଜି ଆମ ସନ୍ତାପର ମୁଖ୍ୟ କାରଣ ।

କମଳ ଅପାଙ୍କ ବିଷୟରେ ଅନେକ କିଛି ଲେଖିବାକୁ ଇଚ୍ଛା ଥିଲେ ମଧ୍ୟ ମୁଁ ବାଟବଣା ହୋଇଯାଉଛି । ୮୩ ବର୍ଷ ଆୟୁଷ ଘେନି ସେ ଏହି ମର୍ତ୍ତ୍ୟପୁରକୁ ଆସିଥିଲେ, କିନ୍ତୁ ୮୩ ଯୁଗ ପାଇଁ ସେ ଓ ଗିରିଜା ଭାଇ ଓଡ଼ିଶାରେ କୀର୍ତ୍ତି ସ୍ଥାପନ କରି ଚାଲିଗଲେ । ଏକ ଯୁଗର ଅବସାନ ଘଟିଲା । କମଳ ଅପା ରକ୍ତମାଂସର ମଣିଷ ଥିଲେ କିନ୍ତୁ ସେହି ରକ୍ତମାଂସ ଭିତରେ ଅସରନ୍ତି ଅମୃତର ଅଣୁପରମାଣୁ ପୂରି ରହିଥିଲା ।

କମଳ ଅପାଙ୍କର ପୁଣ୍ୟ ସ୍ମୃତିକୁ ସ୍ମରଣ କରି ନମ୍ରତାର ସହିତ ତାଙ୍କର ଆତ୍ମାକୁ ଜର୍ମାନୀରୁ ଅୟୁତ ଅୟୁତ ପ୍ରଣାମ ଜଣାଉଛି ।

•••



# କମଲୋଚନଙ୍କ ଚରଣାଶ୍ରିତ କମଳ କୁମାରୀ

**ଡାକ୍ତର ନିତ୍ୟାନନ୍ଦ ସ୍ୱାଇଁ**

ପାଖେଇ ପାଖେଇ ଆସୁଥିବା ନିଜର ମୃତ୍ୟୁ ସମ୍ପର୍କରେ ସଚେତନ କରେଇ ଦିଏ ଅନ୍ୟ କାହାର ମୃତ୍ୟୁ ସମ୍ବାଦ। ପୁଣି ମୃତ୍ୟୁ ପ୍ରତି ଆମେ ପ୍ରାୟତଃ ଏକ ନକରାତ୍ମକ ମନୋଭାବ ପୋଷଣ କରୁଥିଲେ ମଧ୍ୟ ଏହା ଯେ ପରବର୍ତ୍ତୀ ଉନ୍ନତିରେ ଜୀବନ ପାଇଁ ପଥ ଉନ୍ମୋଚନ କରିଦିଏ ଏହା ନିଃସନ୍ଦେହ। ତଥାପି କୌଣସି ଆତ୍ମୀୟସ୍ୱଜନଙ୍କ ମୃତ୍ୟୁଲେଖ ଲେଖିବା ପାଇଁ ପଡ଼ିଲେ ତାହା ହୋଇପଡ଼େ ବଡ଼ ବାଧାଦାୟକ, ଅତି ଅସ୍ୱସ୍ତିକର । କାରଣ ଦିବଂଗତ ଆତ୍ମା ଜୀବିତ ଥିବାବେଳେ ତାଙ୍କସହ ଜଡ଼ିତ ବହୁ ମଧୁରସ୍ମୃତି ମନକୁ ମଥିତ କରିପକାଏ। ମୁଁ କମଳ ମ୍ୟାଡ଼ାମଙ୍କର ପ୍ରତ୍ୟକ୍ଷ ଛାତ୍ର ନଥିଲି । ତଥାପି ତାଙ୍କଠାରୁ ଲାଭ କରିଥିଲି କିଛି ଅଯାଚିତ ଆଦର ଓ ସ୍ନେହଶ୍ରଦ୍ଧା । ଏପରିକି ଦରକାରବେଳେ ତାଙ୍କର ଅକୁଣ୍ଠ ସାହାଯ୍ୟ ପ୍ରାପ୍ତ ହୋଇଥିଲି । ମ୍ୟାଡ଼ାମ୍ ଥିଲେ ବଡ଼ ବିନୟୀ । ତାଙ୍କ ଆଚରଣ ଓ ଉଚ୍ଚାରଣରେ କୌଣସି ଅସଙ୍ଗତି ନ ଥିଲା । ବିଜୁ ପଟ୍ଟନାୟକଙ୍କ ଭଳି ଜଣେ ଉତ୍ତୁଙ୍ଗ ବ୍ୟକ୍ତିତ୍ୱଙ୍କର ଆତ୍ମୀୟ ହୋଇ ମଧ୍ୟ ତାଙ୍କୁ ସ୍ପର୍ଶ କରିପାରି ନଥିଲା ପ୍ରୌଢ଼ ଅହଂକାର ।

ମ୍ୟାଡ଼ାମ୍‌ଙ୍କ ସୁଯୋଗ ସ୍ୱାମୀ ଚିରନମସ୍ୟ ଗିରିଜାଭୂଷଣ ପଟ୍ଟନାୟକ ଥିଲେ ବଡ଼ ଦୃଢ଼ମନା ଓ କେତେକାଂଶରେ ଅନମନୀୟ । ପୁଣି ସର୍ବଦା କର୍ମତତ୍ପର । ତାଙ୍କସହ ସୁଖକର ଦାମ୍ପତ୍ୟ ଜୀବନ ନିର୍ବାହ କରିବା ମ୍ୟାଡ଼ାମ୍‌ଙ୍କର ଚାରିତ୍ରିକ ନମନୀୟତାର ଏକ ଜ୍ୱଳନ୍ତ ଦୃଷ୍ଟାନ୍ତ । ପୁଣି ସନ୍ତାନମାନଙ୍କୁ ନୈତିକ ଶିକ୍ଷା ତଥା ଯଥାର୍ଥ ମାର୍ଗଦର୍ଶନ କରାଇ ସେମାନଙ୍କୁ ସମାଜରେ ସୁପ୍ରତିଷ୍ଠିତ କରାଇବା ସଙ୍ଗେ ସଙ୍ଗେ ସମାଜ ଅନୁକୂଳ କରି ଗଢ଼ିଦେଇ ସେ ଜଣେ ସଫଳ ମାଆଙ୍କ ଭୂମିକା ସମ୍ପାଦନ କରିଛନ୍ତି । ଏହାର ନିଦର୍ଶନ ମଧ୍ୟ ଦେଖିବାକୁ ପାଇଛନ୍ତି ତାଙ୍କର ବନ୍ଧୁବାନ୍ଧବ ଓ ଅଗଣିତ ପରିଚିତ ବ୍ୟକ୍ତି ।

ବାର୍ଦ୍ଧକ୍ୟକୁ ଦ୍ୱିତୀୟ ଶୈଶବ ବୋଲି କୁହାଯାଇଛି। ମ୍ୟାଡ଼ାମ୍‌ଙ୍କୁ କବଳିତ କରି ରଖିଥିଲା ବାର୍ଦ୍ଧକ୍ୟକାଳୀନ ବ୍ୟାଧି । ହେଲେ ତାଙ୍କର ସୁଯୋଗ୍ୟ ସନ୍ତାନମାନେ ଦୀର୍ଘବର୍ଷ ଧରି ଉତ୍ସର୍ଗୀକୃତ ତଥା ନିରନ୍ତର ଭାବରେ ଏବଂ ଅତି ନିଷ୍ଠାରସହ ତାଙ୍କର ଯେଉଁଭଳି ସେବା କରି ଆସୁଥିଲେ, ତାହା ଥିଲା ଅତୁଳନୀୟ । ଏହି ପରିପ୍ରେକ୍ଷୀରେ ଦେଖିଲେ ମ୍ୟାଡ଼ାମ୍ ଥିଲେ ଜଣେ ସଫଳ ମାଆ ଓ ତାଙ୍କ ପିଲାମାନେ ଥିଲେ ସଫଳ ସନ୍ତାନ । କୁହାଯାଇଥାଏ ଯେ ଈଶ୍ୱରଙ୍କର ଆଶୀର୍ବାଦ ନଥିଲେ କେହି ଲେଖକ ହୋଇପାରନ୍ତିନି । ପୁଣି ଇଂରେଜ ଔପନ୍ୟାସିକା ଭର୍ଜିନିଆ ଉଲ୍‌ଫ କହୁଥିଲେ ଯେ ଯେଉଁମାନେ ସତତ ଲେଖାଲେଖି ଓ ପଢ଼ାପଢ଼ିରେ ମନୋନିବେଶ କରିଥାନ୍ତି, ଜୀବନ ବିତେଇଥାନ୍ତି ବହି, କାଗଜ ଓ କଲମର ଗହଣରେ, ସେମାନେ ନିଜ ନିଜ ଜୀବଦ୍ଦଶାରେ ହିଁ ପାଇଯାଇଥାନ୍ତି ଈଶ୍ୱରଙ୍କର ଆଶିଷ । ସୁତରାଂ ମ୍ୟାଡ଼ାମ୍ ଥିଲେ ଈଶ୍ୱରଙ୍କର ଆଶିଷଧନ୍ୟା ।

ମ୍ୟାଡ଼ାମ୍ ଥିଲେ ଜଣେ କୃତୀ ଛାତ୍ରୀ । ଛାତ୍ରବତ୍ସଳା ଅଧ୍ୟାପିକା ଏବଂ ଏକନିଷ୍ଠ ଗବେଷିକା । ଥିଲେ ଉଦ୍ଭିଦ ବିଜ୍ଞାନୀ । ଜଣେ ବିଦଗ୍ଧ ଉଦ୍ଭିଦ ବିଜ୍ଞାନୀ ଭାବରେ ସେ ଶୁଣିପାରୁଥିଲେ ମୂକ ଉଦ୍ଭିଦଗୁଡ଼ିକର



ଭାଷା । ସେହି ଅବୋଧ ଭାଷାକୁ ସେ ପ୍ରକାଶକ୍ଷମ କରିପାରିଥିଲେ ଓଡ଼ିଆ ଲିପିରେ । କମଳ ମ୍ୟାଡ଼ାମ୍ ଲେଖିକା ଥିଲେ । 'ବୃକ୍ଷଲତାର ଔଷଧିଗୁଣ' ଓ 'ରୋଗ ଉପଶମରେ ଉଦ୍ଭିଦ' ଆଦି ପୁସ୍ତକ ରଚନା କରିଥିଲେ । ବିଜ୍ଞାନ ପ୍ରଚାର ସିମିତିର ଆଜୀବନ ସଦସ୍ୟା ରହି ବିଜ୍ଞାନର ପ୍ରଚାର ଓ ପ୍ରସାର ମାଧ୍ୟମରେ ବିଜ୍ଞାନକୁ ଜନପ୍ରିୟ କରାଇବାରେ ଗ୍ରହଣ କରିଥିଲେ ଗୁରୁତ୍ୱପୂର୍ଣ୍ଣ ଭୂମିକା । ଓଡ଼ିଆ ଭାଷାରେ ରଚନା କରିଥିଲେ ବୃକ୍ଷଲତା ଆଧାରିତ ଶତାଧିକ ଲୋକପ୍ରିୟ ବିଜ୍ଞାନ ପ୍ରବନ୍ଧ । ତାଙ୍କର ଲେଖାମାନ ଥିଲା ସହଜ, ସରଳ, ବୋଧଗମ୍ୟ ତଥା ତଥ୍ୟଭିତ୍ତିକ ।

ନିଜ ଗବେଷଣାରୁ ସେ ଦର୍ଶାଇ ଦେଇଥିଲେ ଯେ ଶ୍ୱାସତନ୍ତ୍ର ସମ୍ବନ୍ଧୀୟ ରୋଗ ଓ ଦୈହିକ ମିଳନଦ୍ୱାରା ସଂରଚିତ ରୋଗଗୁଡ଼ିକ ଆରୋଗ୍ୟ କରିବାରେ ଔଷଧୀୟ ବୃକ୍ଷଲତା ବେଶ୍ ଫଳପ୍ରଦ। ବେଶ୍ ଫଳପ୍ରଦ ଆଜମା ଓ କ୍ୟାନ୍ସର ଉପଶମ କରିବାରେ ମଧ୍ୟ। କେବଳ ସେତିକି ନୁହେଁ, ଉଦ୍ଭିଦରେ ପ୍ରୟୋଗ କରାଯାଉଥିବା କୀଟନାଶକ, ମୃତ୍ତିକାରେ ଥିବା ଜୀବାଣୁଗୁଡ଼ିକଦ୍ୱାରା କିପରି ଅକାମୀ ହୋଇଯାଏ, ସେ ସମ୍ପର୍କରେ ମଧ୍ୟ ଗବେଷଣା କରିଥିଲେ ମ୍ୟାଡ଼ାମ୍ । ପୁଣି ପରିବେଶର ସୁରକ୍ଷା ପାଇଁ ଜନସଚେତନତା ସୃଷ୍ଟି କରିବାରେ ମଧ୍ୟ ସେ ସର୍ବଦା ତତ୍ପର ରହିଆସିଥିଲେ ।

ସେ ଯାହାହେଉ, ମୃତ୍ୟୁ ହେଉଛି ଜୀବନର ସହଯାତ୍ରୀ । ସୁତରାଂ ମୃତ୍ୟୁ ଅଲଂଘ୍ୟ । କିନ୍ତୁ ଏକ ସାର୍ଥକ ଜୀବନ ବଞ୍ଚିବାରେ ହିଁ ଜୀବନର ସାର୍ଥକତା, ମୃତ୍ୟୁର ସାର୍ଥକତା ମଧ୍ୟ । ସେହି ଦୃଷ୍ଟିରୁ ଦେଖିଲେ କମଳ ମ୍ୟାଡ଼ାମ୍‌ଙ୍କର ଇହକାଳ ଥିଲା ସବୁଦିଗରୁ ସଫଳ ।

ମୁଁ ତାଙ୍କ ଅମର ଆତ୍ମାର ସଦ୍‌ଗତି କାମନା କରୁଛି । ତାଙ୍କ ଶୋକସନ୍ତପ୍ତ ପରିବାରବର୍ଗଙ୍କ ଶାନ୍ତି, ଧୈର୍ଯ୍ୟ ଓ ସାହସପାଇଁ ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା କରୁଛି ।

◆◆◆





# IN LOVING MEMORY OF KAMALA APA

**Vivek Pattanayak**

My first recollection of Kamal Patnaik was in the college when I was in my undergraduate class in the Ravenshaw College, Cuttack in the late fifties of the last century. She was known to be a brilliant student and commanded great respect for her modern outlook. I did not know her personally. I knew Girija Patnaik, very well-known as he was a famous student leader with great following. Moreover, he was a Communist having excellent knowledge of thoughts of Marx, Engels, Lenin and Mao. One day I saw Girija Babu and Kamala Apa as she was by then known by that name to the students, together in the bus when I was traveling to Bhubaneswar. I was introduced to her. During the bus ride we had animated discussion on politics, economic and social l aspects of the Indian society. From the tenor of conversation, I realized Kamal Apa was a radical thinker. She passionately spoke against caste and gender discrimination. Views on land reforms were very much like that of Shri Nabakrushna Choudhury, a Chief Minister who pioneered land reforms movement in Odisha. Kamal Apa conveyed during the discussion about inequality which bedeviled the Indian society. She appeared to be more revolutionary than Girija Babu. I did not know that she was betrothed to Girija Babu although I guessed that as much.

My father, Dr.Gopal Chandra Pattanayak was associated with Paribhasa and Gynskosha and during that period he interacted with Kamal Apa due to her depth of knowledge on botany and zoology. He was full of praise for her clarity of thinking and grip over the subject.

She made a name for herself for technical knowledge in the academia. Her students had great admiration for her teaching ability and research approach. After a very successful career in the academic world, she has rightly appointed to a constitutional position as a Member of the Public Service Commission. She earned great reputation as being upright and just while discharging her duties.

After retiring from the constitutional position, she dedicated herself for public cause. She was actively associated with the activities of the Universe, a cultural body of multifarious activities organizing seminars, workshops of national and international issues. The organization produced great work on Buddhism, Jainism, Folk Culture and Society in Transition. She was a great support to Shri Girija Bhusan Patnaik. They together with the institutions of Switzerland produced excellent work on indigenous culture.

As a mother she was very affectionate and also gave right education to make them enlightened citizens. She inculcated social values of on their children so that they are free from obscurantism and bigotry. As a wife very dutiful and supported Girija Babu during ups and downs of life.

After she was struck down by ailment she was no longer available for social cause. In her exit from the world Odisha lost an eminent scholar, a radical thinker and social activist. Her dazzling personality would inspire many to serve the society to fight for social justice.and protection of secular values.

◆◆◆

# ଆମର ଅତି ପ୍ରିୟ କମଳ ଅପା

ସରୋଜ କୁମାର ମହାନ୍ତି (ମୁନା) ଓ

ଅଳକା କୁମାରୀ ମହାନ୍ତି (ଅଲି)

କମଳ ଅପା,

ଗୋରା ଚକ୍ ଚକ୍ ଚେହେରା, ହେମ ଗୌର ମୁଖ, ବଡ଼ ସିନ୍ଦୂର ବା ବିନ୍ଦି ଟୋପା, ଅତି ସାଧାରଣ ଶାଢ଼ି ପିନ୍ଧି ଚଳପ୍ରଚଳ ହେଉଥିବା ଚଳନ୍ତି ପ୍ରତିମା । ସେ ହେଉଛନ୍ତି ଆମ ସମସ୍ତଙ୍କର ଅତି ପ୍ରିୟ 'କମଳ ଅପା', ଯାହାଙ୍କୁ ଦେଖିଲେ ଆମେ ସମସ୍ତେ ଆପେ ଆପେ ନତମସ୍ତକ ହୋଇ ନମସ୍କାର କରୁଥିଲୁ ।

ସେ କମଳ ଅପା ଆଉ ଇହଜଗତରେ ନାହାନ୍ତି । ସେ ଚାଲିଯାଇଛନ୍ତି ଆରପାରିକୁ, ଯେଉଁଠୁ କେହି ଫେରନ୍ତି ନାହିଁ । ଅବଶ୍ୟ ବାର୍ଦ୍ଧକ୍ୟଜନିତ ରୋଗରେ ପୀଡ଼ିତଥାଇ କେତେବର୍ଷ ହେଲା, ସେ ପ୍ରାୟ ମୌନ ଥିଲେ । ବାହ୍ୟ ସଂସାର ବିଷୟରେ କିଛି ଜାଣୁ ନଥିଲେ କି ଜାଣିଥିଲେ ବି କିଛି ପ୍ରକାଶ କରିବାକୁ ଅକ୍ଷମ ଥିଲେ । ସାନ ପୁଅ 'କୁନିପୁଅ' ତାଙ୍କୁ ପୌରାଣିକ ଶ୍ରବଣ କୁମାର ଭଳି ଅନବରତ ଦେଖାଶୁଣା କରୁଥାଏ । ତଥାପି ସେ ଆମର ମାନସ ମନ୍ଦିରରେ ଜୀବିତ ଥିଲେ । ଆମେ ମନକୁ ମନ କହୁଥିଲେ ଅମଳ ଅପା ଅଛନ୍ତି । ଆଜି ଆଉ ସେଇଟା ହେବନାହିଁ । ଖାଲି, ଖାଲି ଲାଗୁଛି ମନଟା । ଶୋକାକୁଳ ହୋଇ କ'ଣ କରିବୁ, କିଛି କରିପାରିନୁ । ଆବେଗଭରା ଭାବନାକୁ ଲେଖାରେ ପ୍ରକାଶ କରିବାକୁ ଭାଷା ପାଉନୁ ।

ତାଙ୍କର ସ୍ୱାମୀ, ସୁବିଖ୍ୟାତ ସମାଜସେବୀ ୰ ଗିରିଜା ଭୂଷଣ ପଟ୍ଟନାୟକ ଅନେକ ବହି ଲେଖିଛନ୍ତି । ତା' ଭିତରେ 'ଜୀବନର ବାଟେ ଘାଟେ' ଓ 'ଜୀବନରେ ଜନ ପଥରେ' ତାଙ୍କର ଆତ୍ମଜୀବନୀ । ସେଥିରେ ସେ ତତ୍କାଳୀନ ସାମାଜିକ, ରାଜନୈତିକ, ନେତା ଓ ଲୋକମାନଙ୍କ ବିଷୟରେ ଲେଖିଛନ୍ତି । କିନ୍ତୁ ଆଶ୍ଚର୍ଯ୍ୟର କଥା ଯେ ସେ ନିଜ ବିଷୟରେ କି କମଳ ଅପାଙ୍କ ବିଷୟରେ ବେଶି କିଛି ଲେଖିନାହାନ୍ତି । କମଳ ଅପା ନିଜର ଆତ୍ମଜୀବନୀ ଲେଖିନାହାନ୍ତି, କେବଳ ତାଙ୍କର ବହୁଚର୍ଚ୍ଚିତ ଓ ବହୁ ଆଦୃତ ଦୁଇଟି ବହି – 'ବୃକ୍ଷଲତାର ଔଷଧି ଗୁଣ', '୧ମ ଓ ୨ୟ ଭାଗରେ ମୁଖବନ୍ଧରେ ସେ ତାଙ୍କ ବିଷୟରେ ଅଳ୍ପ କିଛି ଆଭାସ ଦେଇଛନ୍ତି । ତାଙ୍କର ବାପା ୰ ଉଦୟନାଥ ପଟ୍ଟନାୟକ, ସୁବିଖ୍ୟାତ ଲକ୍ଷ୍ମୀନାରାୟଣ ପଟ୍ଟନାୟକ (ବିଜୁ ପଟ୍ଟନାୟକଙ୍କ ବାପା)ଙ୍କର ଭଣଜା । ମାମୁଁ ଚାହିଁଥିଲେ ଭଣଜା ଡାକ୍ତର ହେବାକୁ । ସେ ହେତୁ ଭଣଜା କଲିକତାର ମେଡ଼ିକାଲ କଲେଜରେ ଯାଇ ଆଡ଼ମିଶନ ନେଲେ । କିନ୍ତୁ କିଛିଦିନ ପଢ଼ିଲା ପରେ ମଣିଷର ମରଶରୀରକୁ Anatomy Department ଦେଖିଲା ପରେ ତାଙ୍କୁ ମେଡ଼ିକାଲ ଶିକ୍ଷା ଭଲ ଲାଗିଲା ନାହିଁ । ତେଣୁ ସେ ସେଠାରୁ ଚାଲିଆସିଲେ । ତା'ପରେ ସେ ନିଜେ ତାଙ୍କ ଜୀବନରେ ତାଙ୍କର ମେଧାବୀ ଛାତ୍ରୀ ଝିଅକୁ ମେଡ଼ିକାଲ ପଢ଼ାଇବାକୁ ମନ ବଳାଇଲେ । ସେଇ ଅନୁଯାୟୀ କମଳ ଅପା । Sc. ପରେ S.C.B Medical College



ରେ ଆଡ଼ମିଶନ ନେଲେ । କିନ୍ତୁ ତାଙ୍କ ବାପାଙ୍କ ପରି ତାଙ୍କର ଅବସ୍ଥା । ସେ ମଣିଷର ମରଶରୀରକୁ ଦେଖି ମେଡ଼ିକାଲ କଲେଜରୁ ପଳାଇ ଆସିଲେ । ତା'ପରେ Botany Honours ନେଇ B.Sc ପଢ଼ିଲେ । ତା'ପରେ ସେ ଯାହା କରିଛନ୍ତି ତା' ଗୋଟେ ବିରାଟ ଇତିହାସ । ଉଚ୍ଚଶିକ୍ଷା ପାଇ ସେ Allahabad ଯାଇଥିଲେ ଓ ସେଠାରୁ Ph.D. ଲାଭ କରିଥିଲେ। Ravenshaw College ରେ ସେ ନିଜର ଅଧ୍ୟାପନା ଆରମ୍ଭ କରି Department ର Professor ଓ Head ହୋଇପାରିଥିଲେ । ସେ ଅତି ସ୍ନେହୀ, ଛାତ୍ରବତ୍ସଳ ଥିଲେ । ତାଙ୍କ ପାଖରେ ଗବେଷଣା କରି ଅନେକ ଛାତ୍ର, ଛାତ୍ରୀ Ph.D ପାଇଛନ୍ତି । ସେମାନଙ୍କର ମଧ୍ୟରେ ଅଛନ୍ତି ଡକ୍ଟର କାଞ୍ଚନବାଳା ପଟ୍ଟନାୟକ ଓ ଅନ୍ୟମାନେ ।

ତାଙ୍କର ଦୁଇଖଣ୍ଡ ବହି 'ବୃକ୍ଷଲତାର ଔଷଧିଗୁଣ' ସେ ଓ ତାଙ୍କର ଝିଅ ପ୍ରଜ୍ଞା, ଯେକି Chemistry ରେ Ph.D ପାଇଛନ୍ତି । ତାଙ୍କଦ୍ୱାରା ଲିଖିତ ବହି ଦୁଇଟିରେ ୧୦୦ଟି ଗଛ, ଲତା ଓ ସେମାନଙ୍କଠାରୁ କିପରି ଔଷଧ ଉତ୍ପାଦନ କରାଯାଇପାରେ ଓ କେଉଁ କେଉଁ ରୋଗରୁ ନିରାକରଣ ହୋଇପାରେ ସେ ବିଷୟରେ ପ୍ରାଞ୍ଜଳ ରୂପେ ବୁଝାଯାଇଛି । ବହି ୨ଟି ବର୍ଣ୍ଣକ୍ରମାନୁସାରେ ଅରୁ ଆରମ୍ଭ ହୋଇ ଲ (ଲାଜକୁଳୀ)ରେ ଶେଷ ହୋଇଛି । ଲାଜକୁଳୀ ଲତା ଦେଢ଼ଶୁର ଭାଇବୋହୂ ପରି ପ୍ରଥମ ଖଣ୍ଡଟିର ମୁଖବନ୍ଧରେ ସେ ତାଙ୍କର ଦାର୍ଶନିକ ମନୋଭାବରେ ପରିଚୟ ଦେଇ ଜିଜ୍ଞାସା କରିଛନ୍ତି। "ମଣିଷ ଜୀବନରେ ଯାହା ସବୁ ଘଟିଯାଏ ସେ ସବୁ କ'ଣ ଆକସ୍ମିକ ଭାବେ ନା ସେ ସବୁ ବିଧିର ବିଧାନ ପାଇଁ ?" ତା'ପରେ ନିଜ ଜୀବନର ଘଟଣାବଳିର ଦୃଷ୍ଟାନ୍ତ ଦେଇଛନ୍ତି । ସେମିତି ଦ୍ୱିତୀୟ ଭାଗରେ ସେ ତାଙ୍କର ସାମାଜିକ, ମନସ୍ତାତ୍ତ୍ୱିକ ଭାବନାର ଆଭାସ ଦେଇଛନ୍ତି ।

ଆମ ପ୍ରଦେଶର ଗାଁ ଗହଳିରେ ଘନ ଅରନ୍ୟାନୀ ମଧ୍ୟରେ ଏମିତି ଜନଜାତି ବାସ କରନ୍ତି, ସେମାନଙ୍କ ବିଷୟରେ ଆମେ ବେଶି କିଛି ଜାଣୁନାହୁଁ, ସେମାନଙ୍କ ନାଁ ଭୋଟର ତାଲିକାରେ ନଥାଏ (ବର୍ତ୍ତମାନର ଜାତୀୟ ନାଗରିକତା ରେଜିଷ୍ଟରରେ National Citizenship Register ବି ?) କିନ୍ତୁ, ସେମାନଙ୍କ ପାଖରେ ଗଛ, ଲତା ବିଷୟରେ ବହୁତ ଜ୍ଞାନଥାଏ । ସେମାନେ ଜାଣନ୍ତି କେଉଁ ଗଛ, କେଉଁ ଲତା କି ପ୍ରକାର ରୋଗକୁ ଉପଶମ କରିପାରେ ଓ ତା'ର ପ୍ରଣାଳୀ ଭାବୁକ କମଳ ଅପା ଗୋଟେ ସ୍ୱପ୍ନ ଦେଖିଥିଲେ, ସେ ସ୍ୱପ୍ନ ଥିଲା ଗୋଟେ ଅନୁଷ୍ଠାନ Institute ଗଢ଼ିବା ପାଇଁ, ଯେଉଁ ଅନୁଷ୍ଠାନରେ ଏହି ଜନଜାତି, ଏହି ଗଛଲତାଙ୍କ ବିଷୟରେ ବିସ୍ତୃତ ଗବେଷଣା କରି 'ବିକଳ୍ପ ଔଷଧ' ତିଆରି ହୋଇପାରିବ । ଏ ଯୁଗ ହେବ 'ବିକଳ୍ପ ଔଷଧ'ର ଯୁଗ । ବାର୍ଦ୍ଧକ୍ୟଜନିତ ଦୁରାମୟ ରୋଗରେ ସେ ପୀଡ଼ିତ ନହୋଇଥିଲେ ସେ ତାଙ୍କର ଏ ସ୍ୱପ୍ନକୁ ସାକାର କରିପାରିଥାନ୍ତେ । ତାଙ୍କ ଅନ୍ତେ ତାଙ୍କଦ୍ୱାରା ଅନୁପ୍ରାଣିତ ବ୍ୟକ୍ତି Botany ରେ Scholar ମାନେ ହୁଏତ ଚେଷ୍ଟା କରିବେ ତାଙ୍କ ସ୍ୱପ୍ନକୁ ସାକାର କରିବା ପାଇଁ ।

ସେ ଥିଲେ ଗୋଟେ ବହୁମୁଖୀ ପ୍ରତିଭା । ବ୍ୟସ୍ତବହୁଳ ଜୀବନ ଭିତରେ ସେ ମଧ୍ୟ ଜଣେ ସାଧାରଣ ଗୃହିଣୀ ଭାବେ ସବୁ ଘର କାମ ସୂଚାରୁରୂପେ ପରିଚାଳନା କରୁଥିଲେ, ଏପରିକି ବହୁତ ସମୟରେ ସେ ନିଜେ







ରାନ୍ଧୁଥିଲେ । ନିଜର ପିଲାମାନଙ୍କୁ ଓ ପରିବାରରେ ନିଜର ଭାଇ ଭଉଣୀ ଓ ଦିଅରମାନଙ୍କ ଜୀବନ ଗଢ଼ିବାରେ ତାଙ୍କର ଅବଦାନ ଅତୁଳନୀୟ । ସେ ପ୍ରକୃତରେ ଅନ୍ୟମାନଙ୍କ ପାଇଁ କେବଳ ଜୀଇଁଥିଲେ । ତାଙ୍କର ଜୀବନକୁ ଅନ୍ୟମାନଙ୍କ ପାଇଁ ଉତ୍ସର୍ଗ କରିଥିଲେ ।

ସେ ଥିଲେ ସୁଲେଖିକା । ଆଗରୁ କହିଥିବା ଦୁଇଟି ବହି ଛଡ଼ା ସେ ଅନେକ ପାଠପଢ଼ା ବହି ଓ ପ୍ରବନ୍ଧ ଲେଖିଛନ୍ତି । ବିଜ୍ଞାନକୁ ସାଧାରଣ ଜନତା ପାଖରେ ଲୋକପ୍ରିୟ କରିବା ପାଇଁ ସେ ସରଳ ଭାଷାରେ ପ୍ରବନ୍ଧ ଲେଖୁଥିଲେ । ତାଙ୍କର ସବୁ ସୃଷ୍ଟି ଅତି ଉଚ୍ଚକୋଟୀର । ତାଙ୍କର ଭାଷାର ଶୈଳୀ ମଧ୍ୟ ଅତି ଚମତ୍କାର । 'ବୃକ୍ଷଲତାର ଔଷଧି ଗୁଣ'ର ଦ୍ୱିତୀୟ ଭାଗର ମୁଖବନ୍ଧ ସମାପ୍ତ କରି ସେ ଲେଖିଛନ୍ତି-

"ଜୀବନର ଅପରାହ୍ନରେ ଠିଆହୋଇ ପୂର୍ବାହ୍ନକୁ ମନେ ପକାଇବାକୁ ଭୟ ଲାଗେ । ପିତୃପୁରୁଷ, ବାପା, ମାଆ, ଶ୍ୱଶୁର, ଦାଦି ଶ୍ୱଶୁର, ଭାଇ ସମସ୍ତେ ମନେ ପଡ଼ନ୍ତି, ଯେଉଁମାନେ ମତେ ଏଇଠି ପହଞ୍ଚିବାରେ ସାହାଯ୍ୟ କରିଛନ୍ତି । ସେମାନଙ୍କୁ ପ୍ରଣିପାତ କରୁଛି ଏହି ଅବସରରେ ।"

ଯଦି ବାର୍ଦ୍ଧକ୍ୟଜନିତ ରୋଗ ତାଙ୍କୁ ହୋଇ ନଥାନ୍ତା ଓ ସେ ତାଙ୍କର Special Institute ପ୍ରତିଷ୍ଠା କରି ଜୀବନର ରାଜ ରାସ୍ତାରେ ଠିଆହୋଇ ତାଙ୍କର କର୍ମମୟ ଜୀବନର ଦିନ ସବୁକୁ ମନେ ପକାଇ ଆଜି ତାଙ୍କର ଭାବନା ବ୍ୟକ୍ତ କରିଥାନ୍ତେ, ତା' କିପରି ହୋଇଥାଆନ୍ତା ? ଆପଣମାନେ କଳ୍ପନା କରନ୍ତୁ । ଆମ ଦୁହିଁଙ୍କର କଳ୍ପନାନୀତ ।

ମୋର ବ୍ୟକ୍ତିଗତ ଜୀବନରେ ତାଙ୍କର ପ୍ରଭାବ କିପରି ଥିଲା ? ବର୍ଣ୍ଣନାତୀତ । ଅଳି ସାଙ୍ଗରେ ମୋର ବିଭାହର ପ୍ରସ୍ତାବ ଯେତେବେଳେ ଆସିଲା, ମୁଁ ତାଙ୍କୁ ଦେଖିନଥିଲି । ମୁଁ ଜାଣିନଥିଲି ସେ ଡେଙ୍ଗା କି ଗେଡ଼ା, ସେ କେତେଦୂର ପଢ଼ିଛନ୍ତି ବା କ'ଣ କରୁଛନ୍ତି । ନଦେଖି ନଶୁଣି ମୁଁ ପ୍ରସ୍ତାବରେ ରାଜି ହୋଇଗଲି କାହିଁକି ନା ସେ କମଳ ଅପାଙ୍କର ସାନ ଭଉଣୀ । ଆମେ ଦୁଇଜଣ, ମୁଁ ଓ ଅଳି, ଓଡ଼ିଶା ବାହାରେ ରହୁଥିଲୁ । ତେଣୁ ଦୈନନ୍ଦିନ ଜୀବନରେ କମଳ ଅପା ଆସୁନଥିଲେ । କିନ୍ତୁ ଯେତେବେଳେ ଅମେ କଟକ ଆସୁଥିଲୁ, କମଳ ଅପାଙ୍କୁ ଭେଟିବା ଆମର ଥିଲା ପ୍ରଥମ କାମ, ସେ ମୋର ଦେଢ଼ଶାଶୁ ଓ ଅଳିର ବଡ଼ଭଉଣୀ ।

ସର୍ବଦା ହସ ହସ ମୁହଁ, ଅମାୟିକ, ସ୍ନେହୀ, ବିଜ୍ଞ, ଛାତ୍ରବତ୍ସଳ, ଅଧ୍ୟାପିକା, ସର୍ବୋପରି ଜଣେ ସାଧାରଣ, ଅତି ଭଲ ମଣିଷ ଭାବରେ ନିଷ୍କପଟ, ସରଳ, ନିରହଂକାରୀ, ଦରଦୀ ଓ ପରୋପକାରୀ ଆମ୍ଭର ଅତି ପ୍ରିୟ କମଳ ଅପା ପ୍ରକୃତରେ କୋଟିଏରେ ଗୋଟିଏ । ଓଡ଼ିଶାର ନାରୀ ଜଗତରେ ଜଣେ ବିରଳ, ପ୍ରବାଦ ବ୍ୟକ୍ତିତ୍ୱ ।

ପ୍ରଭୁ ଜଗନ୍ନାଥ ତାଙ୍କର ସ୍ୱର୍ଗତ ଆତ୍ମାକୁ ସଦ୍‌ଗତି ଦିଅନ୍ତୁ । ତାଙ୍କର ଶୋକାକୁଳ ପରିବାର, ଯେଉଁଥିରେ କି ଆମେ ଦୁଇଜଣ ବି ସାମିଲ (ପ୍ରଜ୍ଞା, ଅଭିଜିତ, ବ୍ୟାପ୍ତି, ସୁଚରିତା, ଗାୟତ୍ରୀ, ବର୍ଷା ଓ ଇଷା)ଙ୍କୁ ଧୈର୍ଯ୍ୟ ଓ ମନୋବଳ ଦିଅନ୍ତୁ, ଏତିକି ଆମର ପ୍ରାର୍ଥନା ।

◆◆◆





# KAMAL APA

**Kharavela Mohanty**

A Life dedicated is a life fulfilled. The idea ........ perfectly for a gentle and caring lady whom I have always advised and respected. My association with Kamal Apa, ....... Prof. Dr. Kamal Kumari Patnaik, has been for more than half a century, and during this long period of acquaintance I have observed her keenly not only as a close relative, but also as a senior colleague in Ravenshaw College.

The daring lady opted for science stream at a time when prospects for women education were not very encouraging. Financial constraints apart, there were other hindrances during her pursuit of a commendable academic career, which ultimately made here Professor of Botany and a leading Botanist of Odisha. She has produced many research articles and made a sustained effort to find a permanent case for chromic asthma. After retirement she distinguished herself by rendering meritorious service to Odisha Public Service Commission.

However, the most impressive treat of her personality was the intense bonding that she had for her family. Very rarely we come across people who so meteriulously balance their professional life with their family surroundings. Her warmth and affection not only endeared her to all her relations on the in-laws side, but also she was the pivot for all her younger siblings whom she raised with great love and attention. Universally known as 'Kamal Apa', she indeed was a caring sister for all. I would be missing out so much if I do not mention a few things about her rebuttable husband Paku Bhai - Shri Girija Bhusan Patnaik. They were a made-for-each-other couple and their wedding was solemnised at the behest of Kamal Apa's maternal ....... Shri Biju Patnaik. It was this mutual support and cooperation that gave a big best to Kamal Apa's academic career.

With her demise the family has last that glue that helped in evolving a class, well- ..... family structure. Such losses are extremely difficult to heal-almost irreparable. My prevent prayers are for her three children who have to bear this loss with courage and fortitude. Kamal Apa lived a full life and had finished all her crassly duties of late she was confined to bed and she needed a release. God had granted her wish ! May she rest in eternal peace !!

◆◆◆

# ସ୍ମୃତିର ସ୍ଫଟିକରେ କମଳ ନାନୀ

**ଡଃ ସଂଗୀତା ରଥ**

ଯେତେବେଳେ ମୁଁ ମୋର ଚତୁଃପାର୍ଶ୍ୱରେ ଥିବା ପରିବେଶକୁ ଠିକ୍ ଭାବରେ ବୁଝି ନଥାଏ, ବାପା ମା'ଙ୍କୁ ନେଇ ମୋର ସ୍ପଷ୍ଟ ଧାରଣା ସୃଷ୍ଟି ହୋଇ ନଥାଏ, ନିଜକୁ ମଧ୍ୟ ଚିହ୍ନି ନଥାଏ, ସେହି ଦିନରୁ ମୁଁ ଜାଣିଛି କମଳ ନାନୀ ଓ ଗିରିଜା ବାବୁଙ୍କୁ। ଏତିକି ବୁଝିପାରୁଥିଲି ସେମାନେ ଆମର ଖୁବ୍ ନିଜର ଏବଂ ଏକାନ୍ତ ଆତ୍ମୀୟ। ମୋର ବାପା ମନସ୍ତତ୍ତ୍ୱବିଦ୍ ପ୍ରଫେସର ରାଧାନାଥ ରଥ ଓ ଶ୍ରୀଯୁକ୍ତ ଗିରିଜା ଭୂଷଣ ପଟ୍ଟନାୟକ ସମ୍ପର୍କ ବହୁ ଦିନର। ମୁଁ କମଳ ନାନୀଙ୍କୁ ଜାଣିଛି, ଜଣେ ଉଚ୍ଚକୋଟୀର ଉଦ୍ଭିଦ ବିଜ୍ଞାନୀ ହିସାବରେ ନୁହେଁ, ଜଣେ ଦକ୍ଷ ପ୍ରଫେସର ହିସାବରେ ନୁହେଁ, ଲୋକସଭା ଆୟୋଗର ପୂର୍ବତନ ସଦସ୍ୟା ହିସାବରେ ନୁହେଁ, ବା ଜଣେ ସଫଳ ବିଜ୍ଞାନ ଲେଖିକା ହିସାବରେ ନୁହେଁ, ବରଂ ଜଣେ ସ୍ନେହୀ, ଦରଦୀ, ଅମାୟିକ ମଣିଷ ଭାବରେ। ଯାହାଙ୍କର କୀର୍ତ୍ତି ଓ ମଣିଷ ପଣିଆର କୃତି ସତ। ଉଦ୍‌ଜୀବିତ। ସମସ୍ତ ସୁଗୁଣର ଜାଜ୍ଜୁଲ୍ୟମାନ ପ୍ରତିଭାର ଅଧିକାରୀ ହୋଇଥିଲେ ମଧ୍ୟ ତାଙ୍କ ପରି ଭଦ୍ର, ନମ୍ର ଓ ନିରହଙ୍କାରୀ ବ୍ୟକ୍ତି ବିରଳ।

ଗିରିଜା ବାବୁ ବାପାଙ୍କର ଛାତ୍ର ହୋଇଥିବାରୁ, ତାଙ୍କ ସ୍ତ୍ରୀ ହିସାବରେ ଆମେ ସବୁ ଭାଇ ଭଉଣୀ ତାଙ୍କୁ କମଳ ନାନୀ ବୋଲି ଡାକୁଥିଲୁ। ମୋର ସ୍ପଷ୍ଟ ଭାବରେ ମନେ ଅଛି, ଗିରିଜା ବାବୁ ଓ କମଳ ନାନୀ ଆମ ଘରକୁ ପ୍ରାୟ ସନ୍ଧ୍ୟାବେଳେ ବୁଲି ଆସୁଥିଲେ। ଗପସପ କରି ଥକି ପଡ଼ିଲେ, ସପଟିଏ ପକାଇ କମଳ ନାନୀ ଆମର ଖୋଲା ବାରଣ୍ଡା ଉପରେ ଗଡ଼ି ପଡୁଥିଲେ। ମୁଁ ଖୁବ୍ ଛୋଟ ହୋଇଥାଏ। କମଳ ନାନୀ ବୋଲି ନ ଡାକି ତାଙ୍କୁ ଖନେଇ ଖନେଇ କମଳୀ ନାନୀ ବୋଲି ଡାକୁଥାଏ। ବିନା ସଂକୋଚରେ ତାଙ୍କ ଉପରେ ଲଦିହୋଇ ବସିଯାଏ। ସେ ମୋତେ ଆଦର କରି ଗପ କୁହନ୍ତି। ପରବର୍ତ୍ତୀ କାଳରେ ମା'ଙ୍କଠାରୁ ମୋର ଏହି କମଳୀ ନାନୀ ଡାକ ବିଷୟରେ ଶୁଣି ଶୁଣି ହୁଏତ ଏସବୁ ସ୍ମୃତି ମୋ' ମନ ଭିତରେ ଏବେ ବି ଜୀବନ୍ତହୋଇ ରହିଛି।

ଆମର କଟକସ୍ଥିତ ସାମନ୍ତସାହି ବାସଭବନର ଗୋଟିଏ ମାତ୍ର ମହଲା ତିଆରି ହୋଇଥାଏ । ପ୍ରବଳ ବର୍ଷାହୋଇ ଆମ ଘରେ ପାଣି ପଶିଯାଇଥାଏ । ମୋର ବୟସ ମାତ୍ର ବର୍ଷେ । ଗିରିଜା ବାବୁ ମତେ କାନ୍ଧରେ ଧରି ପାଣି ଭିତରେ ପଶି ବାହାରକୁ ବାହାରୁଥିବାର ଫଟୋ ଆମ ଘରେ ଥିବାର ମୁଁ ଦେଖିଛି । ଆଉ ଏକ ସୁନ୍ଦର ସ୍ମୃତି ମୋ' ମାନସପଟରେ ଉଜ୍ଜୀବିତ ହୋଇଉଠୁଛି । ମନୋବିଜ୍ଞାନର ସ୍ନାତକ ପରୀକ୍ଷାରେ ସମଗ୍ର ଓଡ଼ିଶାରେ ମୁଁ ପ୍ରଥମ ଶ୍ରେଣୀରେ ପ୍ରଥମ ସ୍ଥାନ ଅଧିକାର କରିଥାଏ । ମୋର ବାପା ଛଅମାସ ପାଇଁ ଲଣ୍ଡନ ଯାଇଥାନ୍ତି । ଗିରିଜା ବାବୁ ଶୁଣି ଖୁବ୍ ଖୁସି ହେଲେ, ଘରୁ ଫଟୋଟିଏ ମଗାଇ ଖବର କାଜରେ ଏ ସମ୍ବାଦ ପ୍ରକାଶିତ କରାଇ ଦେଇଥିଲେ । ଆଜି ସେମାନଙ୍କର ଅବର୍ତ୍ତମାନରେ ମୋତେ ଲାଗୁଛି, ମୋର ପରିବାରର ଅତି ନିଜ ଲୋକଙ୍କୁ ମୁଁ ହରେଇ ଦେଇଛି ।



ମୋର ସାଂସାରୀକ ଜୀବନ ଓ ଚାକିରୀର ବ୍ୟସ୍ତତା ଭିତରେ ମୋର ବହୁତ ଦିନ ସେମାନଙ୍କ ସହିତ ଦେଖା ହୋଇ ନଥିଲା । ୨୦୦୭ ମସିହାରେ ରେଭେନ୍ସା ତରଫରୁ ମୁଁ ଯାଇଥିଲି ଗିରିଜା ବାବୁଙ୍କର ଇଣ୍ଟରଭ୍ୟୁ ନେବାପାଇଁ। ରେଭେନ୍ସା ବିଶ୍ୱବିଦ୍ୟାଳୟର ପ୍ରଥମ କୁଳପତି ଶ୍ରୀଯୁକ୍ତ ଦେବଦାସ ଛୋଟରାୟ ରେଭେନ୍ସାରେ ପଢୁଥିବା ସ୍ୱନାମଧନ୍ୟ ଏବଂ ବିଭିନ୍ନ କ୍ଷେତ୍ରରେ ଉତ୍କର୍ଷତା ଲାଭ କରିଥିବା ଛାତ୍ରଛାତ୍ରୀଙ୍କର ଇଣ୍ଟରଭ୍ୟୁ ନେଇ ତତ୍କାଳୀନ ରେଭେନ୍ସା କଲେଜ ବିଷୟରେ ଏକ ବୃତ୍ତଚିତ୍ର ତିଆରି କରିବାର ପ୍ରଚେଷ୍ଟା କରିଥିଲେ। ରେଭେନ୍ସା ଉପରେ ଏକ କଥିତ ଇତିହାସ (Oral history) ସଂଗ୍ରହ କରିବା ଥିଲା ତାଙ୍କର ମୁଖ୍ୟ ଉଦ୍ଦେଶ୍ୟ। ଏହି ପରିକଳ୍ପନାର ସମସ୍ତ ଦାୟିତ୍ୱ ସେ ମୋ' ଉପରେ ନ୍ୟାସ୍ତ କରିଥିଲେ। ମୁଁ ଯେତେବେଳେ ସେମାନଙ୍କୁ ତାଙ୍କ ଘରେ ଭେଟିଥିଲି, ଗିରିଜା ବାବୁ ଚାଲିପାରୁ ନଥିଲେ। କମଳନାନୀ କିନ୍ତୁ ସମ୍ପୂର୍ଣ୍ଣ ସୁସ୍ଥ ଥିଲେ। ବାତ୍ସଲ୍ୟ ମମତାଭରା ତାଙ୍କର ସୁନ୍ଦର ମିଠା ହସରେ ସେ ମୋତେ ପାଛୋଟି ନେଇଥିଲେ । ଅସୁସ୍ଥତା ସତ୍ତ୍ୱେ ଗିରିଜା ବାବୁଙ୍କ କଥା କହିବାବେଳେ ପୂର୍ବଭଳି ଦାମ୍ଭିକତା ଫୁଟି ଉଠୁଥିଲା । ଗିରିଜା ବାବୁ ତାଙ୍କ ପ୍ରିୟ ରେଭେନ୍ସାକୁ ନେଇ ଥିବା ମଧୁର ସ୍ମୃତିଗୁଡ଼ିକ କହି ଚାଲିଥିଲେ । କିପରି ସେ ରେଭେନ୍ସାର ଷ୍ଟୁଡେଣ୍ଟ ୟୁନିୟନ୍‌ର ସଭାପତି ଥିବାବେଳେ ବାର୍ଷିକୋତ୍ସବରେ ତତ୍କାଳୀନ ପ୍ରଧାନମନ୍ତ୍ରୀ ଶ୍ରୀଯୁକ୍ତ ଜବାହାରଲାଲ୍ ନେହେରୁଙ୍କୁ ନିମନ୍ତ୍ରିତ କରି ଆଣିଥିଲେ। ପ୍ରଧାନମନ୍ତ୍ରୀଙ୍କୁ ଭେଟିବା ପୂର୍ବରୁ ତାଙ୍କର ବ୍ୟକ୍ତିଗତ ସଚିବ କିପରି କହିଥିଲେ ଯେ, ପ୍ରଧାନମନ୍ତ୍ରୀ ମହାବିଦ୍ୟାଳୟମାନଙ୍କୁ ଯାଆନ୍ତି ନାହିଁ। ନିର୍ଭୀକ ଗିରିଜା ବାବୁ ତତ୍‌କ୍ଷଣାତ୍ ଉତ୍ତର ଦେଇଥିଲେ - "ରେଭେନ୍ସା ଏକ ସାଧାରଣ ମହାବିଦ୍ୟାଳୟ ନୁହେଁ। ଏହି ଶିକ୍ଷାନୁଷ୍ଠାନର ମର୍ଯ୍ୟାଦା ଓ ଗୌରବ ଦେଶର ଯେକୌଣସି ବିଶ୍ୱବିଦ୍ୟାଳୟଠାରୁ ଅଧିକ।" ବହୁତ ସମୟ ସେମାନଙ୍କ ସହିତ କଟାଇବାର ସୁଯୋଗ ପାଇଥିଲି।

ଶେଷରେ ଏତିକି କହିବି, ବ୍ୟାପ୍ତି ପରି ସନ୍ତାନ ସବୁ ପିତାମାତାଙ୍କର ଭାଗ୍ୟରେ ନଥାଏ। ବାପା ମା'ଙ୍କ ପଟାନ୍ତର ନାହିଁ। ସେ ପୁତ୍ର ଶବ୍ଦକୁ ଖାଲି ସାର୍ଥକ କରିନାହିଁ, ସବୁ ସନ୍ତାନମାନଙ୍କ ପାଇଁ ଉଦାହରଣ ସୃଷ୍ଟି କରିପାରିଛି। ପ୍ରଜ୍ଞା, ଅଭିଜିତ୍ ଓ ବ୍ୟାପ୍ତିଙ୍କୁ ମୋର ଅନେକ ଭଲପାଇବା ନେଇ ରହୁଛି।

◆◆◆





# 'କମଳ ଅପାଙ୍କ ସ୍ମରଣେ'

ଡଃ କାଞ୍ଚନବାଳା ପଟ୍ଟନାୟକ

ଅପରାହ୍ନ ପ୍ରାୟ ସାଢ଼େ ଚାରିଟା । ମୋ' ବଡ଼ଝିଅ ଲିପି ଫୋନ୍ କରି କହିଲା, "କମଳ ଅପା ଚାଲିଗଲେ, ପ୍ରଜ୍ଞା ଖବର ଦେଇଛି" ବହୁଦିନ ଧରି ବିଛଣା ଧରିଥିଲେ, କଷ୍ଟ ପାଉଥିଲେ । ଜନ୍ମ ଥିଲେ ମୃତ୍ୟୁ ଯେ ନିଶ୍ଚିନ୍ତ ତାହା ଜାଣି ମଧ କେମିତି କେଜାଣି, ମନ ଭିତରେ ଖଟ୍‌କା ଲାଗିଲା । କମଳ ଅପାଙ୍କର ଚିରାଚରିତ ହସଭରା ମୁହଁ ଆଖିଆଗରେ ଭାସିଗଲା । ଗୋଟିଏ ମୂଲ୍ୟବାନ ଜୀବନର ଅବସାନ ଘଟିଲା ।

ବହୁଦିନ ତଳକୁ ମନ ଚାଲିଗଲା । ଉଣେଇଶ ସତଷଠୀ ମସିହା ଜାନୁଆରୀ ୪/୫ ତାରିଖ ବେଳକୁ ମୋର ଶୈଳବାଳା ମହିଳା ମହାବିଦ୍ୟାଳୟରେ କାର୍ଯ୍ୟରେ ଯୋଗଦେବା ଲାଗି ପବ୍ଲିକ ସର୍ଭିସ୍ କମିଶନରୁ ପତ୍ରଟିଏ ଆସିଥାଏ । ଯେ ହେତୁ ପଢ଼ିବାବେଳୁ ବାହାଘର ହୋଇ ମୋର ବଡ଼ ଝିଅ ଜନ୍ମ ହୋଇସାରିଥାଏ । ଚାକିରୀରେ ଯୋଗଦାନ କରିବି କି ନାହିଁ, ଏଇ ମାନସିକ ଦ୍ୱନ୍ଦ୍ୱ ଭିତରେ ଶେଷରେ ଯୋଗଦେବାର ନିଷ୍ପତ୍ତି ନେଇ କଟକରେ ପହଞ୍ଚିଲି, ଆଉ ଫେବୃୟାରୀ ମାସ ୨୫ ତାରିଖ ଦିନ ଏଗାରଟା ସମୟରେ ଶୈଳବାଳା ମହିଳା ମହାବିଦ୍ୟାଳୟରେ ପହଞ୍ଚିଲି । ଯୋଗଦାନର ପାରମ୍ପରିକତା ପୂର୍ଣ୍ଣ କରିବା ପରେ ଅଧକ୍ଷା ଶ୍ରୀମତୀ ପ୍ରେମଲତା ବେହେରା ମତେ ପିଅନ୍ ସଙ୍ଗରେ ରାସ୍ତାର ଅପରପାର୍ଶ୍ୱରେ ଥିବା ବିଜ୍ଞାନ ବ୍ଲକର ଉଦ୍ଭିଦ ବିଜ୍ଞାନ ବିଭାଗର ମୁଖ୍ୟ ଡ. କମଳ କୁମାରୀ ପଟ୍ଟନାୟକଙ୍କ ପାଖକୁ ପଠାଇଦେଲେ ।

ମନରେ ମୋର ଅନେକ ଆବେଗ, ଆଶଙ୍କା ଓ ଉତ୍କଣ୍ଠା ! ଯଦିଓ ପିଲାବେଳୁ କଟକରେ ଜନ୍ମ ନେଇ ପାଠପଢ଼ି ବଢ଼ିଛି ମୁଁ, କେବେହେଲେ ଶୈଳବାଳା ମହାବିଦ୍ୟାଳୟର ଭିତରକୁ ମୁଁ ପ୍ରବେଶ କରିନଥିଲି କିମ୍ବା ଡ. କମଳ କୁମାରୀ ପଟ୍ଟନାୟକଙ୍କୁ ଜାଣିନଥିଲି । ପିଅନଟି ମତେ ଡିପାର୍ଟମେଣ୍ଟକୁ ନନେଇ, ପଛପଟେ ଥିବା ଏକ କ୍ୱାର୍ଟର୍ସକୁ ନେଇଗଲା । ସେଇଠି ମୋର ପ୍ରଥମଦେଖା ମୋର ବିଭାଗୀୟ ମୁଖ୍ୟ, ଡ. କମଳ କୁମାରୀ ପଟ୍ଟନାୟକ ଓ ତାଙ୍କ ସହିତ ଥିବା ଶ୍ରୀମତୀ ଚିତ୍ରରେଖା ଦାସଙ୍କ ସହ ।

ସେଇଦିନ ସେଇ ବଳିଷ୍ଠ, ସୁନ୍ଦର, ଦେବୀପରି ମହିଳାଙ୍କର ଆନ୍ତରିକତା, ସହୃଦୟତା ଓ ମମତା ମୋର ମନଭିତରର ମାଡ଼ାମ୍ ପଟ୍ଟନାୟକଙ୍କୁ କେତେବେଳେ 'କମଳ ଅପା'ରେ ପରିବର୍ତ୍ତନ କରିଦେଲା, ତା' ଜଣାପଡ଼ିଲା ନାହିଁ । ଏତେ ଅଳ୍ପସମୟ ମଧରେ ସେ ମତେ ଏତେ ଆପଣାର କରିଦେଉଥିଲେ ଯେ, ସେଇ ସମ୍ବନ୍ଧ ଆମର ସବୁଦିନ ପାଇଁ ରହିଗଲା ।

ଶୈଳବାଳାରେ ମୋର ରହଣୀ ସମୟରେ ତାଙ୍କ ସହିତ ଭାରତୀୟ ବିଜ୍ଞାନ କଂଗ୍ରେସରେ ଯୋଗଦେବା ପାଇଁ ଆମେ ସାଙ୍ଗହୋଇ ବମ୍ବେ ଆଇ.ଆଇ.ଟି ଯାଇଥିଲୁ । ବମ୍ବେରେ ରହଣୀ, ଭ୍ରମଣ, 'ମେରା ନାମ



ଜୋକର୍'ର ସୁଟିଂ ଏବଂ କମଳ ଅପାଙ୍କର ସାହାଯ୍ୟ, ସହାଚର୍ଯ୍ୟ ଏବଂ ମାର୍ଗଦର୍ଶନ ଚିରଦିନ ପାଇଁ ସ୍ମରଣୀୟ ହୋଇ ରହିବ ।

ଶୈଳବାଳାରେ ରହଣୀ ସମୟରେ ଘଟଣାକ୍ରମେ କମଳ ଅପା ଏବଂ ମୁଁ ପ୍ରାୟ ଏକ ସମୟରେ ମାଟର୍ନିଟି ଲିଭ୍‌ରେ ରହିଥିଲୁ । ତାଙ୍କର ପୁଅ, 'ପୁପୁ' ଏବଂ ମୋର ଝିଅ, 'ହାପି' ପ୍ରାୟ ଏକ ବୟସର । ମୋର ବଡ଼ଝିଅ ଲିପି ମଧ୍ୟ ତାଙ୍କ ଝିଅ ପ୍ରଜ୍ଞାର ସହପାଠିନୀ ଥିଲା ରେଭେନ୍ସା କଲେଜ୍‌ରେ ପଢ଼ିଲାବେଳେ । ବର୍ତ୍ତମାନ ମଧ୍ୟ ସେମାନଙ୍କର ବନ୍ଧୁତ୍ୱ ଅକ୍ଷୁର୍ଣ୍ଣ । ଏଇ ଭାବରେ ଆମେ ପ୍ରାୟ ପାରିବାରିକ ବନ୍ଧନରେ ବାନ୍ଧିହୋଇଯାଇଥିଲୁ କହିଲେ ଅତ୍ୟୁକ୍ତି ହେବନାହିଁ ।

ବର୍ଷେ, ଦି ବର୍ଷ ଭିତରେ କମଳ ଅପାଙ୍କର ବଦଳି ହୋଇଯାଏ ଏବଂ ମୁଁ ବିଭାଗୀୟ ମୁଖ୍ୟ ଭାବେ ରହିଯାଏ। ତାଙ୍କ ସହିତ ଘନିଷ୍ଠ ଭାବରେ କାର୍ଯ୍ୟ କରିଥିବା ଯୋଗୁଁ କାର୍ଯ୍ୟ ସୂଚାରୁ ରୂପେ ପରିଚାଳନା କରିବାକୁ ମତେ କୌଣସି ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ିନଥିଲା । ତା'ପରେ ୧୯୭୧ ମସିହାରେ ମୋର ବଦଳି ହୁଏ ରେଭେନ୍ସା ମହାବିଦ୍ୟାଳୟକୁ, ମୋର ପୁରାତନ, ଅତିପ୍ରିୟ କଲେଜ୍, ଯେଉଁଠି କ୍ରମାଗତ ଭାବେ, ପ୍ରି ୟୁନିଭର୍ସିଟିରୁ ପୋଷ୍ଟ ଗ୍ରାଜୁଏଟ୍ ପର୍ଯ୍ୟନ୍ତ ମୁଁ ଥିଲି ଶିକ୍ଷାନବିଶ । ସେଠି ପୁଣି ଦେଖାହୁଏ କମଳ ଅପାଙ୍କ ସହିତ । ଯୋଗକୁ ପୋଷ୍ଟ ଗ୍ରାଜୁଏଟ୍ ବ୍ଲକ୍‌ରେ ଆମେ ଦୁହେଁ ଗୋଟିଏ ରୁମ୍‌ରେ ବସୁଥାଉ। ତାଙ୍କର ଆନ୍ତରିକତାର ପ୍ରାଚୁର୍ଯ୍ୟ ମତେ ଅଭିଭୂତ କରିଥିଲା।

ଏକାଠି ସମୟ କାଟିବା, ସାଉଥ୍ ଇଣ୍ଡିଆନ୍ ହୋଟେଲରେ ଜଳଖିଆ ଖାଇବା, ନୂଆ ନୂଆ ମେଧାବୀ ପିଲାମାନଙ୍କ ଗହଣରେ, କେବେ ସହ ଶିକ୍ଷୟିତ୍ରୀ, କେବେ ସହକର୍ମୀ, କେବେ ବନ୍ଧୁ ଭାବରେ ସମୟ କଟିଯାଉଥିଲା। କିଛିଦିନ ପରେ ତାଙ୍କରି ପ୍ରେରଣା ଓ ପରାମର୍ଶରେ ମୁଁ ତାଙ୍କର ପ୍ରଥମ ପିଏଚ.ଡି. ଛାତ୍ରୀ ଭାବରେ ନାମ ପଞ୍ଜିକରଣ କରିଥିଲି ଏବଂ ତାଙ୍କର ସହାୟତାରେ ମୋର କାମ ବେଶ୍ ଆଗେଇ ଯାଇଥିଲା। ଶୈଳବାଳା କଲେଜ୍‌ରେ କାମ କରିବା ସମୟରୁ ଆମେ ତାଙ୍କ ଘରକୁ ଅନେକଥର ଯାଇଛୁ ଏବଂ ଶ୍ରୀଯୁକ୍ତ ଗିରିଜା ଭୂଷଣ ପଟ୍ଟନାୟକଙ୍କ ସହ ଅନେକବାର ଦେଖା ହୋଇଛି। ସବୁବେଳେ ସେ ମତେ ଉତ୍ସାହ ଓ କାମ କରିବାର ପ୍ରେରଣା ଦେଇ ଆସିଥିଲେ। ସେ ନିଜେ ମତେ ଭଲ କାମ କରିବା ପାଇଁ ବହୁତ ଗଳ୍ପସଲ୍ଲବସ୍ଥର କରନ୍ତି । ତାଙ୍କ ପରିବାର ସହ ଆମେ ନିବିଡ଼ ଭାବେ ଜଡ଼ିତ ଥିଲୁ। ଏବଂ ସମସ୍ତ ଶୁଭକର୍ମରେ ଯୋଗଦାନ କରୁଥିଲୁ।

ମୋର ଗବେଷଣା ଶୀର୍ଷରେ ଥିବାବେଳେ ମୋର ଅଚାନକ ପ୍ରାୟ ତିନିବର୍ଷ ଭିତରେ ବଦଳି ହୋଇଗଲା ସୁଦୂର ରାଉରକେଲାକୁ। ଗବେଷଣା ପାଇଁ ସେଠାରେ ସୁବିଧା ନଥିବାରୁ ମୋର କାମ ଧୀରମନ୍ଥର ଗତିରେ ଚାଲିଲା। ପରିବାର ଦୁଇଝିଅଙ୍କର ପାଠପଢ଼ା ଦାୟିତ୍ୱ ଏବଂ କର୍ମକ୍ଷେତ୍ରର ଦାୟବଦ୍ଧତା ଭିତରେ ମୋ' କାମର







ପ୍ରାୟ ଡୋରି ବନ୍ଧାହେଲା ପରେ କମଳ ଅପାଙ୍କ ପରାମର୍ଶରେ, ଦଶହରା, ବଡ଼ଦିନ ଛୁଟି ଓ ଖରାଛୁଟିରେ ଆସି ମୁଁ ରେଭେନ୍ସା । C.R.R.I. ରେ ବାକି କାମ କରି ବହୁ ବିଳମ୍ବରେ ହେଲେ ମଧ୍ୟ ତାଙ୍କର ପ୍ରଥମ ଚଷ.ଉ ଛାତ୍ରର ମାନ୍ୟତା ପାଇଲି । ପୁଅ କଢ଼େଇ ଝିଅପରି ତା' ପରେ ପରେ ତାଙ୍କର ଅନେକ Ph.D ଛାତ୍ର, ଛାତ୍ରୀ ବାହାରିଲେ । ସେଥିପାଇଁ ସେ ମତେ ଅନେକଥର କହି ଖୁସି ହେଉଛନ୍ତି ।

ଚାକିରୀରେ ଯୋଗଦେବା ପରଠାରୁ ଶେଷପର୍ଯ୍ୟନ୍ତ ତାଙ୍କ ସାଙ୍ଗରେ ମୁଁ ଓତଃପ୍ରୋତଃ ଭାବେ ଜଡ଼ିତ ଥିଲି । ପବ୍ଲିକ ସର୍ଭିସ୍ କମିଶନ୍‌ର ସଦସ୍ୟା ଥିବାବେଳେ ମତେ ଥରେ ତାଙ୍କ ଅଫିସ୍‌କୁ ନେଇ ଯାଇଥିଲେ । ସେ ଔଷଧୀୟ ବୃକ୍ଷଲତାର ଉପକାରୀତା ଉପରେ ଉଚ୍ଚତର ଗବେଷଣା କରି ଅନେକ ବହି ଲେଖିଛନ୍ତି । ଏଗୁଡ଼ିକ ବେଶ୍ ଉପାଦେୟ ହୋଇପାରିଛି । ଅନେକ ସମୟରେ ମତେ ପାଣ୍ଡୁଲିପି ପଢ଼ିବାକୁ ଦେଇ ମତାମତ ଲୋଡ଼ିଛନ୍ତି ।

କମଳ ଅପାଙ୍କ ବିଷୟରେ ଲେଖିବସିଲେ ପୋଥିଟିଏ ହେବ । ଗତ ଚାରିବର୍ଷ ହେବ ତାଙ୍କର ଅସୁସ୍ଥତା ବଢ଼ିଯିବାରୁ କଷ୍ଟ ପାଇଲେ । ଗିରିଜା ବାବୁଙ୍କ ମୃତ୍ୟୁଖବର ପାଇ ଯାଇଥିଲି । ମତେ ଚିହ୍ନି ପାରିଲେନି, ତାଙ୍କର ସେ ଶୂନ୍ୟଦୃଷ୍ଟି ଦେଖି ମନରେ ବହୁତ କଷ୍ଟହେଲା । ଚଳଚଞ୍ଚଳ, ପ୍ରତିଭାମୟୀ, ବାଗ୍ମୀ, ସଦା ହସ ହସ ମୁହଁଟିଏ ପରିବର୍ତ୍ତନ ମତେ ଯନ୍ତ୍ରଣା ଦେଲା । କ'ଣ ବା କରିପାରିବା ! ଏ ତ ବିଶ୍ୱନିୟନ୍ତାଙ୍କ ସୃଷ୍ଟିର ରହସ୍ୟ ।

"କମଳଅପା ଚାଲିଗଲେ ।" ଏଇ ଖବରଟି ପାଇ ତତ୍‌କ୍ଷଣାତ୍ ଯାଇଥିଲି । ମହାନିଦ୍ରାରେ ଶୋଇଯାଇଥିଲେ ସିଏ । ନିଜର ପ୍ରିୟ ପରିଜନ, ପୁଅ ଝିଅ, ସାଙ୍ଗସାଥୀ, ସମସ୍ତଙ୍କୁ ଛାଡ଼ି ଚାଲିଗଲେ ସେଇଠାକୁ, ଯେଉଁଠାରୁ କେହି କେବେ ଫେରନ୍ତି ନାହିଁ । ସେ ପାର୍ଥିବ ଶରୀର ତ୍ୟାଗ କରି ଚାଲିଗଲେ ସତ, କିନ୍ତୁ ତାଙ୍କର ସେ ହସ ହସ ମୁହଁ, ସାବଲୀଳ ଚାହାଣୀ, ଅନାବିଳ ସ୍ନେହ, ଶ୍ରଦ୍ଧା ଓ ଭଲପାଇବା ମୋ' ମନରେ ଚିରଦିନ ଉଜ୍ଜୀବିତ ରହିବ ।

ଭଗବାନ ତାଙ୍କର ଅମର ଆତ୍ମାକୁ ସଦ୍‌ଗତି ଦିଅନ୍ତୁ ଏବଂ ତାଙ୍କର ପିଲାମାନଙ୍କ ମନରେ ତାଙ୍କ ବିଚ୍ଛେଦ ସହିବାର ଶକ୍ତି, ଧୈର୍ଯ୍ୟ ଏବଂ ସାହାସ ଦିଅନ୍ତୁ ।

ଏହା ମୋର ଭଗବାନଙ୍କ ନିକଟରେ ପ୍ରାର୍ଥନା ।

◆◆◆

# ଚିଠିଟିଏ

ଡଃ ବୀଣାପାଣି ସିଂହ

ପୂଜନୀୟ ଅପା

ସେପୁରକୁ ଆପଣଙ୍କ ପାଇଁ ପଠାଉଛି ମୋ'ର ଆଭୁମ ପ୍ରଣତି । ଆଶାକରେ ଗ୍ରହଣ କରିବେ । ୧୯୬୩-୬୫ରେ ମୁଁ ଶୈଳବାଳା କଲେଜ ବିଜ୍ଞାନ ଛାତ୍ରୀ । ଆପଣ ଆମ ଗ୍ରୁପର ପ୍ରାକ୍ଟିକାଲ ନେଉଥାନ୍ତି । ଜାଣେନି କହିଁକି ମୁଁ ବସିଥିବା ଜାଗାକୁ ଆସି ସେଇଠି ଥାଇ ଗୋଟିଏ ଟୁଲ୍ ପକାଇ ବସି ମୁଁ କରୁଥିବା ପ୍ରାକ୍ଟିକାଲି ଦେଖନ୍ତି । ସବୁ ପିଲା ଆସି ଦେଖନ୍ତି । ସବୁଥର - ସବୁଥର ଏମିତି ହୁଏ । ଜାଣେନି କାହିଁକି ଆପଣ ମୋ' ସହିତ ଏତେ ସୁଖ, ଦୁଃଖ ହୁଅନ୍ତି । ତମ ଘର କୋଉଠି ? ତମେ କେତେ ଭାଇଭଉଣୀ ? ବାପା କ'ଣ କରନ୍ତି ? ତମ ଘରଠୁ ଡେରାବିଶ କେତେବାଟ ? ସେଠି ଆମର ଜଣେ ବନ୍ଧୁ ରହନ୍ତି । ସେତେବେଳେ ଆପଣ, ଚିତ୍ରଲେଖା ଅପା, ମଞ୍ଜୁଅପା, ପେରିଅପା, ମୀରା ଅପା, ପ୍ରତୀମା ଅପା ଥା'ନ୍ତି । ଆପଣମାନେ ଏକାଠି ଯାଉଥିବାବେଳେ ଗୁଣ୍ଠୁଣିହାତୀ ପରି ହଲିଦୋହଲି ଚାଲୁଥାଆନ୍ତି ଆପଣ। ଆପଣଙ୍କ ଚମ୍ପାଫୁଲିଆ ରଙ୍ଗକୁ ଖୁବ୍ ସୁହାଏ କିସମ କିସମ ଶାଢ଼ୀ । ମୁଁ ନିରେଖୀ ଦେଖୁଥାଏ ଆଉ ଦେଖୁଥାଏ । ଆପଣଙ୍କ ଢଳଢଳ ଆଖି ମୋତେ ବିମୋହିତ କରେ ।

ଦି' ୟୁନିଭର୍ସରେ ଗିରିଜା ଭାଇ ଓ ଆପଣଙ୍କ ସହିତ ଘନଘନ ଦେଖାହୁଏ। ଭାଇ ବି ଭଲ ପାଆନ୍ତି ଆମ ଦୁହିଁଙ୍କୁ । ଭଲପାଇବାର ବଡ଼ କାରଣ ହେଲା ଆପଣଙ୍କ ସାନପୁଅ, କୁନିପୁଅ, ଆମପୁଅ, ବାପୁନ୍‌ର ବୋର୍ଡ଼ସ୍କୁଲର ଅଷ୍ଟମ ଶ୍ରେଣୀରୁ ରେଭେନ୍ସା, +୨ ସାଇନ୍‌ସ ଯାଏ ସାଙ୍ଗ । ଛୁଆଦିନୁ ଦୁହିଁଙ୍କ ମନ ମିଶେ । ଏହି ପରିପ୍ରେକ୍ଷୀରେ ଅମେ ଦୁଇ ପରିବାର ପାଖେଇଆସୁ । ଥରେ ଆପଣ ମତେ କହିଲେ କୁନିପୁଅ ପାଇଁ ଝିଅ ଦେଖିବାକୁ । କୁନିପୁଅ ମୋ' ପାଖରେ ବହୁତ ଖୋଲା । ଦିନେ ତାକୁ ପଚାରିଲି ବାବୁରେ .... । ସେ କହିଲା - ମାଉସୀ, ମୁଁ ମୋ' ବାହା ହେବିନି। ଅପା, ଭାଇ ଦୂରରେ । ମୁଁ ଏକା ବାପା ମା'ଙ୍କ ପାଖରେ । ଯେ ଆସିବ ସେ ଯେ ନିଷ୍ଠେ ମୋ' ସହିତ ମିଶି ମୋ' ବାପା, ମା'ଙ୍କ ଖବର ବୁଝିବ । ଅବହେଳା କରିବ ନାହିଁ । ସେ ବିଶ୍ୱାସ ମୋର ଦୋହଲିଯାଉଛି ମାଉସୀ । ସେଥିନେଇ .....। ଭାବିଲି ଏ କ'ଣ ଶ୍ରବଣ କୁମାର। ... ହଁ, ଶ୍ରବଣ କୁମାର ଆଖିରୁ ଲୁହ ଶୁଖୁନି ।

ଗୋଟେ କଥା ମନେ ପଡୁଛି ଅପା । କେତେବର୍ଷ ତଳ କଥା । ବୋଧେ ପଚିଶ ବର୍ଷ ହେବ। ଆପଣଙ୍କ ଘରକୁ ଆମେ ଦୁହେଁ ଯାଇଥାଉ । ମୁଁ ଗୋଟେ ଆସାମିଜ୍ ଶାଢ଼ୀ ପିନ୍ଧିଥାଏ। ଆପଣ କହିଲେ ଶାଢ଼ିଟା ବହୁତ ଭଲ ଲାଗୁଛି। କୋଉଠି କିଣିଲ । ବଡ଼ଝିଅ ଶାଶୂଘର ଗୌହାଟୀ । ସେଇଠୁ ଆଣିଥିଲି । କିଛିଦିନ ପରେ ଠିକ୍ ସେମିତି ଶାଢ଼ି ଖଣ୍ଡେ ମଗେଇ ଆପଣଙ୍କ ପାଖକୁ ନେଇକି ଯାଇଥିଲି। ଶାଢ଼ି ଦେଖି



ଆପଣ ଖୁସିହୋଇଗଲେ। କହିଲେ – ପଇସା ନେଲେ ଶାଢ଼ି ରଖିବି। କହିଲି – ମୁଁ ପଇସା ନେବିନି। ଆପଣ ମତେ ଭଲ ପାଆନ୍ତି । ମୁଁ – ଏକଥା ଗଭୀର ଭାବେ ଅନୁଭବ କରେ । ସେହି ଅଧିକାରରେ ମୁଁ ଆଣିଛି – ମୋ' ଅପାଙ୍କ ପାଇଁ ଆଣିଛି । ଆପଣ ନିରବିଗଲେ ।

ଆମ ସାନ ଝିଅ ବଟାନିରେ ଏମ୍‌ଫିଲ୍ କରିଥାଏ । ପିଏଚ୍.ଡି-କରିବ କରିବ ହେଉଥାଏ । ସାଲେପୁର କଲେଜରେ ଇଣ୍ଟରଭ୍ୟୁ ଦେଇ ମନୋନୀତ ହେଲା । ସେ ସେଠି ଜଏନ୍ କଲାପରେ ଆପଣଙ୍କୁ ଯାଇ କହିଲି । ଖୁସିରେ ଆପଣ ଉଚ୍ଛୁଳି ଉଠିଲେ । ମତେ ଯେମିତି ସତେ ଯେମିତି ନିଜ ବଡ଼ଭଉଣୀ । ସାନ ଭଉଣୀର ଝିଅ ସତେ କି ଆପଣଙ୍କ ଝିଅ । ସେଥିପାଇଁ ଏ ଖୁସି ।

ଅପା, ସେଇସବୁ କଥା ମନେପଡ଼ି ମତେ ଖେଂଚୁଛି ମୁଁ କ'ଣ କରିବି ? ଆପଣଙ୍କୁ ପୁଣି ପ୍ରଣାମ କରି ଢକେଇ ଆସୁଥିବା ଲୁହକୁ ପୋଛିବା ଛଡ଼ା ଆଉ ବା କ'ଣ କରିବି ?

◆◆◆





# OUR BELOVED KAMAL APA

**Uttara Ray**

Professor Kamal Patnaik was regarded as 'apa' or elder sister by her juniors and contemporaries alike. She had that charisma to make you feel comfortable in her presence. At the same time, she was a hard task master and whichever office she held, ran it seamlessly well. The Botany department of Ravenshaw college under her stewardship was known for its tranquil academic atmosphere. Both staff and students worked and behaved like a family. To all accounts her stint in the OPSC, had a similar phase.

At home she was equally brilliant in managing the household with a multifaceted personality like Sri Girija Bhushan Patnaik. One wonders if without her background help and participation through thick and thin, the UNIVERSE could have run smoothly over the years. It is remarkable the way she carried together so many roles with ease; the role as of a dedicated teacher, a homemaker, a soulmate and enthusiast in all the social and philanthropic works of her husband.

Professor Patnaik was a passionate botanist. No visitor to her resident at Kala Vikas Kendra Marg would fail to notice her small garden in a limited space which she took personal care to develop and nurture. She was a lover of exotic and medicinal plants. As a matter of fact she has to her credit some books and articles identifying certain plants with medicinal properties for certain diseases. She guided several students in their research on the subject for PhD thesis. Many of them have obtained their degrees under her guidance.

Before she was bedridden whenever I visited her house either by myself or with my husband I found her busy on her desk writing something or the other or pouring over a book. In other words she consistently remained a pursuer of knowledge. I and my husband believe if she were to live longer she could have contributed a lot more to the expanding world of Botany and allied subjects. To us her death leaves a void which is hard to fill up.

◆◆◆

# A COMMITTED PLANT RESEARCHER

**Sukanta Kishore Mohanty**

Life is full of events. We acquire a lot of experience in education and other applied subjects from many of our teachers during our student' days. Later on when we enter upon the great world of life, we forget many things like the flowing water in a river. But some memories that remain etched in us lifelong bears eloquent testimony to it. During my Post-graduation, I was deeply influenced by a professor whose teaching and orientation shaped my subsequent career. She is none other than my revered teacher Prof (Dr) Kamal Kumari Patnaik, a front ranking botanist of Bio-Chemistry. Her astute and relentless effort in the field of Bio-Chemistry (Plant metabolism) of different plants and their utility in the society has carved a niche for her among her peers.

She is the first woman Odia Botanist to receive a doctorate degree. Born on 1st January, 1936 at Bhanja Nagar of Ganjam district, she passed her M.sc from Ravenshaw College, in the 1st class, then went to the Allahabad University for higher research and achieved her Ph.D under the able guidance of Dr. Shriranjan.

Dr. (Mrs) Patnaik was very much influenced by her teacher Dr. Shriranjan and famed Odia Botanist Dr. P.K. Parija. It is discernible in her later workday life. Like Dr. Parija she included all types of plants in her research in the field, to the medicinal forest her by and red algae of the Chilka Lake. Her publication in various national and international journals are examples of her wide range of various investigations and study.

Her teaching career spans more than three decades in the Shailabala Women's College and then Ravenshaw College (Ravenshaw University). She encouraged and inspired many a student during this period. She was promoted to the post of a Professor in 1982 and headed the Dept. successfully till 1993. In 1993 she joined OPSC as a member and completed a full tenure there.

Her research papers published in various journals and books she has written on environmental science popularized her among the Odias as these were published in Odia book form like "Paribesha Katha" and "Udbhidara Ausadhiya Guna" which are the most popular publication of Dr. (Mrs.) Patnaik. Her eight science books for school children have gone a long way in enhancing scientific curiosity among the young. She is also very much known for her translation of the book "Jiba Jagat".

Many of her researches aimed at the wellbeing of the society and brought new enzymes and Bacteria to the light. She has also discovered some medicinal plants to cure asthma from root tuber of the Patal Garuda (Sarpa Gandha) plant. Odisha has a sizable population of the aborigins (Adibasi). She carried on research on various plant projects related to the life of these aborigins.



After 1970, a group of research workers started their research in polymer science in Chemistry department of the then Ravenshaw College. As we know, polymer is a conspicuous compound built up with a conglomeration of monomers. This polymer, produced artificially, is used in making different essential goods. This facilitated the life style of people as a whole, but the plastic refuse (waste) of it posed a problem for environment.

During this time Dr. Patnaik researched on some red algae as the source of natural polymer. This writer availed the opportunity of cogitating deeply on the compound of carbohydrates nitrogenous in Gracilaria species of red algae collected from Chilka Lake, thoroughly.

Natural polymer such as starch, glycogen, cellulose, protein, nucleic acid etc. Show some specialty in comparison to artificial polymeric. Natural polymer mainly divided into two types, homopolymur and co-polymur. Again these are the two types as per their arrangement in the compound i.e. linear and branched.

The alcoholic extract of seaweed at high temperature (37*C) was liquid in nature and it was solidified in low temperature (28*Croom temperature of the laboratory). The hydrolysate product of such solidified mass showed the presence of sugar and amino acids.

The most interesting point was the occurrence of raw material of "Agar-Agar" copolymer which was obtained from hot alcoholic extract. This "copolymer" was found to be made up of sugar and amino acids. The natural polymer does not pollute the environment because it is biodegradable :

Dr. (Mrs.) Patnaik was associated with many institutions and has brought about many positive changes in the social life of Odisha. Her attempt to popularize science and highlight environmental issues among school students is noteworthy. Her talks telecast on television and broadcast on All India Radio of Cuttack brought her closer to general public at large. Her commitments to research have produced 10 PhDs, 20 M.phils and 30 P.G. Dissertation papers. She lives now a retired life, widely respected by her students and numerous readers of her books. Her place in the domain of plant research will remain enshrined in golden letters.

**(N.B.** : This article was published in a popular magazine two and half year ago.)

◆◆◆





# କମଳ ଅପାଙ୍କ ସ୍ମୃତିରେ

**ଇନ୍ଦୁରେଖା ପରିଜା**

**ଡା. ଅମୀୟ ଚରଣ ପରିଜା**

କମଳ ଅପାଙ୍କ ଚାଲିଯିବା ପରେ ଖବର ଆମେ ବାଙ୍ଗାଲୋରରେ ଥିବାବେଳେ ଶୁଣିଲୁ। ସେଦିନ ଅପରାହ୍ନରେ ପୁଟାପର୍ଟିସ୍ଥିତ ସାଇବାବାଙ୍କ ଆଶ୍ରମରେ ସମାଧି ଦର୍ଶନବେଳେ ତାଙ୍କ ପାଇଁ ଗୋଲାପଫୁଲ ଅର୍ପଣ କରି ଆତ୍ମାର ସଦ୍‌ଗତି ପାଇଁ ପ୍ରାର୍ଥନା କରିଥିଲୁ। ଆମର ବିଶ୍ୱାସ ତାଙ୍କର ଆତ୍ମା ଚିରଶାନ୍ତି ଲାଭ କରିଛି। କମଳଅପାଙ୍କ ପ୍ରତି ଏହା ଆମର ଶ୍ରେଷ୍ଠ ଶ୍ରଦ୍ଧାଞ୍ଜଳି।

ଆମର ଦୁଇପରିବାର ବନ୍ଧୁତା ସୂତ୍ରରେ ଆବଦ୍ଧ ହବାର ବହୁ ପୂର୍ବରୁ ମୁଁ କମଳ ଅପାଙ୍କୁ ଜାଣିଥିଲି। (ମୋ' ସାନଝିଅ ତାଙ୍କର ବଡ଼ବୋହୂ ହୋଇଛି) । ଆମେ ଦୁଇଜଣ କିଛିବର୍ଷ ରେଭେନ୍ସା କଲେଜରେ ଏକାଠି ଅଧ୍ୟାପିକା ଥିଲୁ, ସେ ବଟାନୀ ଡିପାର୍ଟମେଣ୍ଟରେ ଓ ମୁଁ ଫିଜିକ୍‌ସ ଡିପାଟମେଣ୍ଟରେ । ସେତେବେଳେ ଯଦିଓ ତାଙ୍କ ସହିତ ଏତେ ଘନିଷ୍ଠତା ନଥିଲା କିନ୍ତୁ ମୋ' ଝିଅର ବାହାଘର ପରେ ତାଙ୍କୁ ଭଲଭାବରେ ଜାଣିବାର ସୁଯୋଗ ପାଇଲି। ଅତ୍ୟନ୍ତ ସ୍ନେହୀ, ବନ୍ଧୁବତ୍ସଳ, ସରଳ, ନିରାଡ଼ମ୍ବର ଜଣେ ମହିଳା, ଯାହାପାଇଁ ସେ ସମସ୍ତଙ୍କର ପ୍ରିୟ କମଳ ଅପା ଭାବେ ପରିଚିତ ଥିଲେ। ମୋ' ଝିଅ ବାହାଘର ପରେ ଦିନେ ବଟାନୀ ଡିପାଟମେଣ୍ଟର ଜଣେ ଅଧ୍ୟାପିକା ମତେ କହିଲେ "ମ୍ୟାଡ଼ମ, ଝିଅ ସାଙ୍ଗରେ ଦେଇଥିବା ଜଳଖିଆ ଭାର ବହୁତ ସୁସ୍ୱାଦୁ ହୋଇଥିଲା।" ମୁଁ ଆଶ୍ଚର୍ଯ୍ୟହୋଇ ପଚାରିଲି "ତମେ କେମିତି ଜାଣିଲ ?" ସେ କହିଲେ "କମଳ ଅପା ଆମ ସମସ୍ତଙ୍କ ଘରକୁ ପଠାଇଥିଲେ।" ଏଭଳି ଥିଲା ତାଙ୍କର ସହକର୍ମୀଙ୍କ ପ୍ରତି ସ୍ନେହ, ଆଦର ଓ ଭଲପାଇବା।

କମଳ ଅପା ଏକାଧାରରେ ଥିଲେ ଜଣେ ଶିକ୍ଷାବିତ୍, ଲୋକପ୍ରିୟ ବିଜ୍ଞାନ ଲେଖିକା, ଗବେଷିକା ତଥା ପ୍ରାକୃତିକ ଚିକିତ୍ସାବିତ୍। ସେ ଜଣେ ପ୍ରକୃତିପ୍ରେମୀ ଥିଲେ ଏବଂ ଘରେ ଅନେକ ପ୍ରକାରର ଫୁଲଫଳ ଗଛ ସହିତ ଔଷଧୀୟ ବୃକ୍ଷଲତା ଲଗାଇଥିଲେ। ସେସବୁ ଉପରେ ଗବେଷଣା କରି ସେ "ବୃକ୍ଷଲତାର ଔଷଧ ଗୁଣ" ନାମକ ଯେଉଁ ପୁସ୍ତକ ରଚନା କରିଥିଲେ ତାଦ୍ୱାରା ସମାଜର ବହୁ ଉପକାର ସାଧିତ ହୋଇଥିଲା।

ଭଗବତ୍ ଦତ୍ତ ସୌନ୍ଦର୍ଯ୍ୟ ତାଙ୍କ ନାମ 'କମଳ'କୁ ସାର୍ଥକ କରିଥିଲା। ସେ କିନ୍ତୁ ଥିଲେ ଅତ୍ୟନ୍ତ ନିରାଡ଼ମ୍ବର। ଆଧୁନିକତାର ଚାକଚକ୍ୟ ତାଙ୍କୁ ସ୍ପର୍ଶ କରିନଥିଲା। ଓଡ଼ିଶାର ବିଶିଷ୍ଟ ସମାଜସେବୀ ସ୍ୱର୍ଗତ ଗିରିଜା ବାବୁଙ୍କର ସେ ଥିଲେ ପ୍ରକୃତ ସହଧର୍ମିଣୀ ଓ ସହକର୍ମିଣୀ। ମୁଁ ଶୁଣିଛି ଅସମୟରେ ପହଞ୍ଚିଥିବା ବହୁ ଲୋକଙ୍କର ଆତିଥ୍ୟରେ କମଳଅପା କେବେ ବି ହେଳା କରିନାହାନ୍ତି।

୩ଟି ପିଲାଙ୍କର ମାଆ ହିସାବରେ ସେ ଥିଲେ ଅତ୍ୟନ୍ତ ମମତାମୟୀ। ତାଙ୍କର ଅଲିଝଲି ସବୁ ସର୍ବଂସହା ମା' ଭାବରେ ସହିଛନ୍ତି। ଆଜି ସେ ତାଙ୍କର ପୁଅବୋହୂ, ନାତୁଣୀମାନଙ୍କୁ ଶୋକସାଗରରେ ଭସାଇ



ଚାଲିଯାଇଛନ୍ତି। ଜୀବନର ଶେଷ ଭାଗରେ ଶଯ୍ୟାଶାୟୀ ରହି କମଳଅପା ଅନେକ କଷ୍ଟ ପାଇଛନ୍ତି କିନ୍ତୁ ତାଙ୍କର ପିଲାମାନେ ନିଜର ସାଧ୍ୟମତେ ସେବାଯତ୍ନ କରିବାରେ ହେଳା କରିନାହାନ୍ତି। ବିଶେଷତଃ ସାନପୁଅ ବ୍ୟାପ୍ତିର ତ୍ୟାଗ ଅତୁଳନୀୟ। ମା'ଙ୍କର ବିୟୋଗ ପରେ ପରିବାରର ସମସ୍ତେ ଦୁଃଖରେ ମ୍ରିୟମାଣ। ତେଣୁ ଏଭଳି ଦୁଃଖଦ ସମୟରେ ଆମେ ସେମାନଙ୍କୁ ସାନ୍ତ୍ୱନା ଦେବା ସହିତ ଧୈର୍ଯ୍ୟ ଓ ସାହସ ଦେବାପାଇଁ ଭଗବାନଙ୍କ ନିକଟରେ ପ୍ରାର୍ଥନା।

◆◆◆





# ଶ୍ରଦ୍ଧାଞ୍ଜଳି

**ଡଃ. ବିଜୟ କୁମାର ପଟ୍ଟନାୟକ**

ସାମନ୍ତ ଚନ୍ଦ୍ରଶେଖର କଲେଜ, ପୁରୀରୁ ମୁଁ ରେଭେନ୍ସା ମହାବିଦ୍ୟାଳୟକୁ ଆସିବା ପରେ ଗଢ଼ିଉଠିଥିଲା ମୋର ସମ୍ପର୍କ ପ୍ରଫେସର ଡଃ କମଳ କୁମାରୀ ପଟ୍ଟନାୟକଙ୍କ ସହ । ଏହା ଅଧିକ ଆଗେଇବାର ସୁଯୋଗ ମିଳିଥିଲା ରସାୟନ ବିଜ୍ଞାନର ଗବେଷଣାଗାରରେ ଯେଉଁଠାରେ ମୁଁ ପ୍ରଫେସର ଡଃ ଗୋକୁଳାନନ୍ଦ ମହାପାତ୍ରଙ୍କ ତତ୍ତ୍ୱାବଧାନରେ ଗବେଷଣା କରୁଥିଲି । ଡଃ. ପଟ୍ଟନାୟକଙ୍କ ଗବେଷଣା ମୁଖ୍ୟତଃ ଔଷଧୀୟ ଗୁଣ ବହନ କରୁଥିବା ଉଦ୍ଭିଦମାନଙ୍କ ଉପରେ ଥିଲା । ସେଗୁଡ଼ିକରେ ଥିବା ଜୈବ ରସାୟନିକ ଉପାଦାନମାନଙ୍କର ସବିଶେଷ ଧର୍ମ ଉପରେ ସେ ପ୍ରଫେସର ଡଃ. ମହାପାତ୍ରଙ୍କ ସହ ଆଲୋଚନା କରୁଥିବା ସମୟରେ ରସାୟନ ବିଜ୍ଞାନ ଉପରେ ତାଙ୍କର ବିବିଧତା ମୋତେ ଅବିଭୂତ କରିଥିଲା । ଏଠାରେ ଗୋଟିଏ କଥା ଆଜି ମଧ ସମସ୍ତ ବିଜ୍ଞାନ ଗବେଷକମାନଙ୍କର ଧ୍ୟେୟ ହେବା ଉଚିତ ବୋଲି ମୁଁ ଭାବେ । ବିଜ୍ଞାନଲବ୍ଧ ଜ୍ଞାନ କିପରି ସାଧାରଣ ଲୋକଟିର ଜୀବନକୁ ସରସ, ସୁନ୍ଦର କରିବ ଏହା ଥିଲା ତାଙ୍କର ଲକ୍ଷ୍ୟ । ବହୁଦିନ ଧରି ଶ୍ୱାସରୋଗ ଭୋଗୁଥିବା ବ୍ୟକ୍ତିଟିଏ ପାଇଁ ଏପରି ଏକ ଗଛଟିଏ ନିଜ ବାଡ଼ି, ବଗିଚାରେ ଲଗାଇ ଓ ନିଜ ଶ୍ରମଦ୍ୱାରା ଉଜ୍ଜୀବିତ କରି ଅକାତରରେ ଦେବା ଥିଲା ତାଙ୍କ ମହନୀୟତାର ଏକ ନିଦର୍ଶନ ।

ସମ୍ପର୍କରେ ସେ ଥିଲେ ମୋର ଅପା, ତେଣୁ ତାଙ୍କୁ ମୁଁ 'କମଳ ଅପା' ବୋଲି ସମ୍ବୋଧନ କରୁଥିଲି ଏବଂ ତାଙ୍କର ସ୍ମିତହାସ୍ୟ ଆମ ସମସ୍ତଙ୍କ ପାଇଁ ଥିଲା ପ୍ରେରଣାଦାୟ । ଆତିଥେୟତାରେ ସେ ଥିଲେ ଅନନ୍ୟା, ସକାଳୁ ସକାଳୁ ମଧ ମୈତ୍ରୀ ସାରଣୀ ବାସଭବନରେ ପହଞ୍ଚଗଲେ ଆପ୍ୟାୟିତ ନକରି ସେ ଛାଡୁନଥିଲେ । ଗିରିଜା ବାବୁଙ୍କ ଅସୁସ୍ଥତା ସମୟରେ ମୁଁ ଯାଇଥିବା ସମୟରେ ଏହିପରି ସ୍ନେହ, ଶ୍ରଦ୍ଧାର ପରଶ ପାଇଥିଲି ।

ସେ ଥିଲେ ଜଣେ ବିଶିଷ୍ଟ ଶିକ୍ଷାବିତ୍, ଗବେଷିକା ଓ ପ୍ରଶାସିକା । ରେଭେନ୍ସା ମହାବିଦ୍ୟାଳୟ ଉଦ୍ଭିଦ ବିଜ୍ଞାନ ବିଭାଗର ପ୍ରଫେସର ଓ ବିଭାଗୀୟ ମୁଖ୍ୟ ଭାବରେ ତାଙ୍କର କାର୍ଯ୍ୟକାଳରେ ତାଙ୍କର ଥିଲା ଅସଂଖ୍ୟ ପ୍ରଶଂସକ । ଅବସର ପରେ ଓଡ଼ିଶା ଲୋକସେବା ଆୟୋଗର ସେ ଥିଲେ ସଦସ୍ୟା । ବିଜ୍ଞାନ ପ୍ରଚାର ସମିତିର କାର୍ଯ୍ୟକ୍ରମରେ ପ୍ରଫେସର ଡଃ. ମହାପାତ୍ରଙ୍କର ସେ ଥିଲେ ଜଣେ ପ୍ରମୁଖ ସହଯୋଗୀ ଓ ତାଙ୍କର ବିଜ୍ଞାନ ଲେଖାମାନ ଛାତ୍ରଛାତ୍ରୀ ଓ ସାଧାରଣ ଲୋକମାନଙ୍କର ପାଇଥିଲା ପାଠକୀୟ ସ୍ୱୀକୃତୀ । ମଣିଷପଣିଆ, ହୃଦ୍‌ବତ୍ତା ଓ ଅନାବିଳ ସ୍ନେହର ମୂର୍ତ୍ତିମନ୍ତ ପ୍ରତୀକ ଥିଲେ କମଳ ଅପା । ତାଙ୍କର ପ୍ରେରଣା ଓ ପ୍ରୋତ୍ସାହନ ପାଇଁ ସେ ଥିଲେ ତାଙ୍କର ଛାତ୍ରଛାତ୍ରୀଙ୍କର ଅତ୍ୟନ୍ତ ପ୍ରିୟପାତ୍ର । ତାଙ୍କର ଜୀବନାଦାର୍ଶ ଓ ବ୍ୟକ୍ତିତ୍ୱ ସମସ୍ତଙ୍କର ଥିଲା ପାଥେୟ । ତାଙ୍କର ଅବର୍ତ୍ତମାନରେ ହରାଇଛୁ ଆମେ ତାଙ୍କର ଅସଂଖ୍ୟ ପ୍ରଶଂସକ । ତାଙ୍କର ପାର୍ଥିବ ଶରୀରକୁ କିନ୍ତୁ ତାଙ୍କର ଅସ୍ତିତ୍ୱ ଆମ ସମସ୍ତଙ୍କ ପାଖରେ ରହିବ ଚିରଦିନ ଏବଂ ସେ ଆମର ନମସ୍ୟ ହୋଇ ରହିଥିବେ ।

ମରଦେହ ତୁମ ଗ୍ରାସିଛି ଶ୍ମଶାନ
ମାତ୍ର ଯଶୋଦେହେ ତୁମେ ଆୟୁଷ୍ମାନ ।

ଏହି ମହାନ ବ୍ୟକ୍ତିତ୍ୱଙ୍କର ସ୍ମୃତିଚାରଣ କରିବାବେଳେ ତାଙ୍କ ପ୍ରଦର୍ଶିତ ପଥ ବାଛିନେଲେ ତାହା ହିଁ ହେବ ଆମ ସମସ୍ତଙ୍କର ତାଙ୍କ ପ୍ରତି ସମୁଚିତ ଶ୍ରଦ୍ଧାଞ୍ଜଳି ।

•••

# ଉଦ୍ଭିଦ ବିଜ୍ଞାନୀ, ବିଜ୍ଞାନ ଲେଖିକା କମଳ ଅପା

**ଭାରତୀ ବେହେରା**

ଡିସେମ୍ବର ୧୭ ତାରିଖ ସନ୍ଧ୍ୟା ୫ଟା। ଖବର ପାଇଲି କମଳ ଅପା ଆଉ ନାହାନ୍ତି। ଦୀର୍ଘଦିନ ଧରି ଅସୁସ୍ଥ ଥିବାରୁ ନିଜର ରାଷ୍ଟ୍ରଭାଷା ରୋଡ଼ରେ ଥିବା ବାସଭବନରେ ଚିକିତ୍ସିତ ହେଉଥିଲେ । ଅନେକ ଦିନ ହେଲାଣି ତାଙ୍କୁ ଦେଖିବାକୁ ଯାଇ ପାରିନଥିଲି । ସ୍ୱନାମଧନ୍ୟା ଉଦ୍ଭିଦ ବିଜ୍ଞାନୀ, ବିଶିଷ୍ଟ ବିଜ୍ଞାନ ଲେଖିକା, ପ୍ରଫେସର ଡକ୍ଟର କମଳ କୁମାରୀ ପଟ୍ଟନାୟକ ଥିଲେ ମୋର ଗୁରୁ। ୧୯୬୫ ମସିହାରେ ଶୈଳବାଳା ମହିଳା ମହାବିଦ୍ୟାଳୟରେ ପ୍ରିୟୁନିଭରସିଟି କ୍ଲାସରେ ନାମ ଲେଖାଇଥିଲି। ସେତେବେଳେ ଆମ କ୍ଲାସରେ ପଢ଼ାଉଥିଲେ କମଳ ଅପା, ପେଚିଅପା (ଡ. ପ୍ରିୟତମା ଦେଓ), ସ୍ମୃତିଦି (ଡ ସ୍ମୃତି ବର୍ଦ୍ଧନ) ଓ ଆହୁରି ଅନେକ ଅଧ୍ୟାପିକା । ମ୍ୟାଡ଼ାମ୍ ନ ଡାକି ଅପା ଡାକିବା ପାଇଁ ସେମାନେ ଆମମାନଙ୍କୁ ନିର୍ଦ୍ଦେଶ ଦେଇଥିଲେ । ଅପା ଡାକ ଭିତରେ ଭାରି ରହିଥିଲା ଆନ୍ତରିକତା, ଭଲପାଇବା ଓ ଭୁଲ୍ କଲେ ତାକୁ ସୁଧାରିବା। କମଳ ଅପାଙ୍କ ସ୍ୱାମୀ ବିଶିଷ୍ଟ ସମାଜସେବୀ, ୟୁନିଭର୍ସର ପ୍ରତିଷ୍ଠାତା ଗିରିଜା ଭୂଷଣ ପଟ୍ଟନାୟକ ଥିଲେ ମୋର ବଡ଼ ଭିଣେଇ ସନ୍ତୋଷ କୁମାର ସାହୁ (ପୂର୍ବତନ ସାଂସଦ)ଙ୍କର ଅନ୍ତରଙ୍ଗ ବନ୍ଧୁ। ସେଥିପାଇଁ କମଳ ଅପାଙ୍କ ସାଙ୍ଗରେ ମୋର ସମ୍ପର୍କ ଭିନ୍ନ ପ୍ରକାର ଥିଲା। ଗିରିଜା ବାବୁଙ୍କର ଆଉ ଜଣେ ଅନ୍ତରଙ୍ଗ ବନ୍ଧୁ ନରୋତ୍ତମ ସାହୁ (ଅବସରପ୍ରାପ୍ତ ପ୍ରିନ୍‌ସିପାଲ, ଚମ୍ପିଆ କଲେଜ) ମୋର ସାନ ଭାଇ ଅରବିନ୍ଦର ଶ୍ୱଶୁର । ସେ ହିସାବରେ କମଳ ଅପା ଓ ଗିରିଜା ବାବୁଙ୍କ ମୋତେ ଝିଅ ବୋଲି କହିଥାନ୍ତି । ମୋର ମନ ଅଛି ସେମାନେ କହନ୍ତି "ତୁ ତ ଆମ ଜ୍ୱାଇଁର ଭଉଣୀ, ଆମ ଝିଅ ପରି।"

କମଳ ଅପା ତତ୍କାଳୀନ ରେଭେନ୍‌ସା କଲେଜର ଉଦ୍ଭିଦ ବିଜ୍ଞାନ ବିଭାଗର ପ୍ରଫେସର ପଦରୁ ଅବସର କଲାପରେ ଓଡ଼ିଶା ପବ୍ଲିକ ସର୍ଭିସ କମିଶନର ସଭ୍ୟା ଭାବରେ କାର୍ଯ୍ୟନିର୍ବାହ କରିଥିଲେ। ସେ ଏମ୍.ଏସ୍.ସି ପାଶ୍ କଲାପରେ ଏହ୍ଲାବାଦ ବିଶ୍ୱବିଦ୍ୟାଳୟର ସୁନାମଧନ୍ୟ ପ୍ରଫେସର ଡ. ରଞ୍ଜନଙ୍କ ତତ୍ତ୍ୱାବଧାନରେ ପି.ଏଚ୍.ଡ଼ି ଡିଗ୍ରୀ ପାଇଥିଲେ। ସେ ସମୟରେ ବିଜ୍ଞାନରେ ପି.ଏଚ୍.ଡ଼ି ପାଇବାରେ ସେ ଥିଲେ ପ୍ରଥମ ଓଡ଼ିଆ ମହିଳା। ଏହା କିଛି କମ୍ କଥା ନୁହେଁ। ଆମେ ସେ ସମୟରେ ଶୁଣିଥିଲୁ କମଳ ଅପା ତେନ୍ତୁଳି ଗଛର ପତ୍ରରୁ ସାଇଟ୍ରିକ ଅମ୍ଳ ବାହାର କରିଛନ୍ତି। ରେଭେନ୍ସା କଲେଜରେ ବି.ଏସ୍.ସି ପଢ଼ିବାବେଳେ ସିନିଅର ଝିଅମାନଙ୍କ ସାଙ୍ଗରେ ଗ୍ଲାସ ହାଉସ ଯିବାର ସୁଯୋଗ ମିଳୁଥିଲା। ସେ ସମୟରେ ଅଧ୍ୟାପିକା ଅରୁଣା ମିଶ୍ର ଗବେଷଣା କରୁଥାନ୍ତି ସେଠାରେ। ମୁଁ ତାଙ୍କ ସାଙ୍ଗରେ ଯାଇ ପେପର କ୍ରୋମାଟୋଗ୍ରାଫି କିପରି ହେଉଛି ଓ କିପରି ବିଭିନ୍ନ ରଙ୍ଗ ଅଲଗା ଅଲଗା ଜାଗାରେ ସ୍ଥାନିତ ହେଉଛି ତାହା ଦେଖିଥିଲି। କମଳ ଅପା ସେତେବେଳେ ପେପର କ୍ରୋମାଟୋଗ୍ରାଫି କିପରି କରାହେଉଛି ତାହା ବିଶଦ୍ ଭାବରେ ବୁଝାଇଥିଲେ ।



କମଳ ଅପା ଯେତେବେଳେ ରେଭେନ୍ସା କଲେଜ୍‌ରେ ପ୍ରଫେସର ଥିଲେ, ତାଙ୍କୁ ମିଶାଇ ଆମେ ୧୯ ଜଣ ଅଧ୍ୟାପକ, ଅଧ୍ୟାପିକା ଥାଉଁ। ୧୯୮୯ ମସିହାରେ ତାଙ୍କ ପରାମର୍ଶ ଓ ଅନ୍ୟମାନଙ୍କ ମିଳିତ ଉଦ୍ୟମରେ ଆମ ବିଭାଗର ପୁରାତନ ଛାତ୍ରସଂସଦ (Botanists Association of Ravenshaw College, BARC) ଗଠିତ ହୋଇଥିଲା। ସେହିଦିନରୁ ଆଜିପର୍ଯ୍ୟନ୍ତ ପ୍ରତିବର୍ଷ ଏହି ଣଇଜଉ ତା'ର ବାର୍ଷିକ ଅଧିବେଶନ କରିଆସୁଛି।

କମଳ ଅପା ଜଣେ ମିଷ୍ଟଭାଷୀ, ଛାତ୍ରବତ୍ସଳା, ଅମାୟିକ, ନାରୀ ସୁଲଭ କୋମଳ ହୃଦୟ ଥିବା ବ୍ୟକ୍ତିତ୍ୱ। ଜର୍ମାନ ଭାଷାରେ ସେ ଡିପ୍ଲୋମା ଲାଭ କରିଥିଲେ। କାର୍ଯ୍ୟକ୍ଷମ ଥିବା ପର୍ଯ୍ୟନ୍ତ ସେ ଗବେଷଣା କରୁଥିଲେ ଓ ତାଙ୍କର ଛାତ୍ରଛାତ୍ରୀମାନଙ୍କୁ ଦିଗ୍‌ଦର୍ଶନ ଦେଉଥିଲେ। ତାଙ୍କ ଅଧୀନରେ ୧୪ ଜଣ ଛାତ୍ର ପି.ଏଚ୍.ଡ଼ି ଡିଗ୍ରୀ ହାସଲ କରିଥିଲେ ଏବଂ ୧୬ ଜଣ ଛାତ୍ର ଏମ୍.ଫିଲ୍ ହାସଲ କରିଥିଲେ। ସବୁ ଛାତ୍ରଛାତ୍ରୀଙ୍କୁ ସେ ସ୍ନେହ ବନ୍ଧନ ଓ ଘରୋଇ ସମ୍ବନ୍ଧରେ ବାନ୍ଧି ରଖିଥିଲେ। ଗୋଟେ ଘଟଣା ମୋର ମନେ ଅଛି। ସକାଳେ ମହାନଦୀ ବିହାର ଯାଇଥିଲି କାମରେ। ସେଇଠୁ ଆସିଲି କମଳ ଅପାଙ୍କ ଘରକୁ। ଭୀଷଣ ଭୋକ ଲାଗୁଥାଏ। ସେ ଖୁସିହୋଇ ଘରେ ଯାହାଥିଲା ସଜେଇ କରି ଖାଇବାକୁ ଦେଇଥିଲେ। ଯେବେ ଗଲେ ବି ସେ ନିଶ୍ଚୟ କିଛି ଖାଇବାକୁ ଦେଉଥିଲେ। ଦେହ ଖରାପ ହେବାପରେ ବି ସେ ଅଭ୍ୟାସ ଥିଲା ତାଙ୍କର। କେତେଥର ନିଜେ ଘର ଭିତରକୁ ଯାଇ ଖାଇବା ଆଣି ଖାଇଛି।

ତାଙ୍କ ଲିଖିତ ୧୮୦ରୁ ଉର୍ଦ୍ଧ୍ୱ ନିବନ୍ଧ ବିଭିନ୍ନ ଜାତୀୟ ଓ ଆନ୍ତର୍ଜାତୀୟ ପତ୍ରିକାରେ ପ୍ରକାଶିତ ହୋଇଛି। ଉଦ୍ଭିଦ ବିଜ୍ଞାନୀ ଭାବରେ ବଗିଚା କରିବା ଥିଲା ତାଙ୍କର ସଉକ। ନିଜ ହାତରେ ଫଳ, ଫୁଲ, ପନିପରିବା ଲଗାଉଥିଲେ ଘର ବଗିଚାରେ । ସେଥିରେ ସେ ଆତ୍ମତୃପ୍ତି ଲାଭ କରୁଥିଲେ। ନୂଆ ଗଛ କିଛି ଲଗାଇଲେ ଆମକୁ ସେଗୁଡ଼ିକୁ ଦେଖାଉଥିଲେ। ଘରେ ତିବ୍ବତିଆନ୍ ପୋଷା କୁକୁର ୫/୬ଟା ରଖିଥାନ୍ତି। ନିଜ ପିଲାପରି କୋଳରେ ବସାଇ ସେମାନଙ୍କ ଦେହରେ ବ୍ରସ ମାରନ୍ତି। ଏପରିକି ସେମାନଙ୍କ ଦେହରେ ଟିଙ୍କ ହେଲେ ତାକୁ ମଧ୍ୟ ସେ ବାହାର କରନ୍ତି।

ଗିରିଜା ବାବୁଙ୍କର ଜନ୍ମର ନିଘଞ୍ଚ ଅରଣ୍ୟ ଭିତରେ। ଅନେକ ସମୟ ସେ କଟାଇଛନ୍ତି ସବୁଜବନାନୀ, ପାହାଡ଼, ପର୍ବତର ଖୋଲ ଦେଇ ଝରିଯାଉଥିବା ନିର୍ଝରିଣୀ ଭିତରେ। କମଳ ଅପା ତାଙ୍କ ସହିତ ରହି ଶାଳ ଫୁଲ, ମହୁଲ, କୁରେ ହିଁ ଫୁଲର ବାସନା, ପାହାଡ଼ର ରୂପ, କୁଟ୍ରା ଓ ମୟୁରର ଡାକ, ଆଷାଢ଼ର ପ୍ରଥମ ବର୍ଷାର ସ୍ପର୍ଶରେ ମାଟିର ଗନ୍ଧ ଭିତରେ ପରିବେଶକୁ ଭଲପାଇବା ଶିଖିଥିଲେ। ସେ ଥିଲେ ଜଣେ ପରିବେଶ ବିଜ୍ଞାନୀ ଓ ପରିବେଶ ଉପରେ ଅନେକ ନିବନ୍ଧ ଲେଖି ଉଚ୍ଚପ୍ରଶଂସିତ ହୋଇଛନ୍ତି। ଅରଣ୍ୟ ଉପରେ ତାଙ୍କ ତତ୍ତ୍ୱାବଧାନରେ ପରିଚାଳିତ ଗବେଷଣା ପୁସ୍ତକ ଆକାରରେ ଇଂରାଜୀ ଭାଷାରେ ପ୍ରକାଶିତ ହୋଇଛି। ସବୁଠାରୁ ଉଲ୍ଲେଖନୀୟ କଥା ହେଉଛି ଉଦ୍ଭିଦର ଶରୀର ତତ୍ତ୍ୱ ସହିତ ସେ ଶ୍ୱାସରୋଗର ଚିକିତ୍ସାରେ ନିଜର ପରିଚୟ ସୃଷ୍ଟି କରିଛନ୍ତି।



ବେଲଗୁଣ୍ଠା, ଗଞ୍ଜାମ ଜିଲ୍ଲାର ସ୍ୱର୍ଗତ ବ୍ରଜବନ୍ଧୁ ତ୍ରିପାଠୀଙ୍କର 'ଦ୍ରବ୍ୟଗୁଣ କଳ୍ପତରୁ', ପୁରୀର ଶ୍ରୀ ଲକ୍ଷ୍ମଣ ମିଶ୍ରଙ୍କର 'ଅନୁଭୂତ ଯୋଗମାଳା', ସ୍ୱର୍ଗତ ଡ. ହରିହର ପଟ୍ଟନାୟକଙ୍କର 'ଗଛ ଚିହ୍ନଟ' ଓ 'ଔଷଧୀୟ ଗୁଣ ଚିହ୍ନଟ' କରିବା ପ୍ରେରଣା ଓ ସ୍ୱର୍ଗତ ଗଦାଧର ମିଶ୍ରଙ୍କର ଲେଖିବା ପାଇଁ ପ୍ରେରଣାରେ ଅନୁପ୍ରାଣିତ ହୋଇ କମଳ ଅପା 'ବୃକ୍ଷଲତାର ଔଷଧୀୟ ଗୁଣ' ଓ 'ରୋଗ ନିବାରଣାର୍ଥେ ବୃକ୍ଷଲତାର ପ୍ରୟୋଗ' ନାମକ ୨ଟି ପୁସ୍ତକ ରଚନା କରିଛନ୍ତି । ଏ ବହି ଦୁଇଟି ପାଠକମାନଙ୍କଦ୍ୱାରା ବିଶେଷ ଆଦୃତ ହୋଇଛି ।

୧୯୭୬ ମସିହାରେ ସେ ଅନ୍ତମୂଳ (Tylophora indica) ନାମକ ଏକ ଲତାଜାତୀୟ ଉଦ୍ଭିଦ ସଂଗ୍ରହ କରି ତା' ଉପରେ ବିଶେଷ ଗବେଷଣା କରିଥିଲେ । ଏହି ଗବେଷଣାର ଫଳସ୍ୱରୂପ ସେହି ଉଦ୍ଭିଦର ପତ୍ରରୁ ସେ ଏକପ୍ରକାର ଔଷଧ ତିଆରି କରିଥିଲେ ଯାହାକି ଶ୍ୱାସରୋଗ ଉପଶମ ପାଇଁ ବ୍ୟବହାର କରାଯାଉଥିଲା ।

ଚିରାଚରିତ ଓଡ଼ିଆ ପରିବାର ପରି କମଳ ଅପା ଓ ଗିରିଜା ବାବୁଙ୍କ ଘରେ ସୋମବାର, ମଙ୍ଗଳବାର, ଗୁରୁବାର ଆଦି ଦିନଗୁଡ଼ିକ ଅନ୍ୟଦିନଠାରୁ ଅଲଗା ନଥିଲା, ଅର୍ଥାତ ଆମିଷ ଭୋଜନ ପାଇଁ କିଛି କଟକଣା ନଥିଲା । କମଳ ଅପା ନିଜେ ବେଳେବେଳେ ନିଜର ବ୍ୟସ୍ତ କର୍ମନିର୍ଘଣ୍ଟ ଭିତରେ ବି କିଛି ଖାଦ୍ୟ ପ୍ରସ୍ତୁତ କରୁଥିଲେ ।

ସମାଜସେବୀ, କମ୍ୟୁନିଷ୍ଟ କର୍ମୀ ଗିରିଜାଭୂଷଣ ପଟ୍ଟନାୟକ ୟୁନିଭର୍ସ ଭଳି ଏକ ସଂସ୍ଥାଦ୍ୱାରା ଦେଶ ଦେଶ ମଧ୍ୟରେ ସମ୍ପର୍କ ଓ ସମନ୍ୱୟ ପ୍ରତିଷ୍ଠା କରି ଏକ ବିଶିଷ୍ଟ ସମାଲୋଚକ ଭାବରେ ରାଜନୀତିଜ୍ଞ, ବ୍ୟୁରୋକ୍ରାଟ୍‌ସ ଓ ସାଧାରଣ ଲୋକଙ୍କ ମଧ୍ୟରେ ଆଦୃତ ହୋଇଥିଲେ । କଟକ ସହରର ୧୦୦୦ ବର୍ଷ ପୂର୍ତ୍ତି ପାଳନ ଉତ୍ସବରେ ଗିରିଜା ବାବୁଙ୍କ ସମ୍ପାଦକତ୍ୱ ପାଇଁ ଏହାର ଉଦ୍‌ଘାଟନୀ ସମାରୋହରେ ୪୦ଟି ଦେଶର ପ୍ରତିନିଧି ଯୋଗଦାନ କରିଥିଲେ । ସେ ପରିବେଶରେ ରହି କମଳ ଅପା ମଧ୍ୟ ବିଜ୍ଞାନ, ସାହିତ୍ୟ ଓ ସଂସ୍କୃତିର ସମନ୍ୱୟତା ସୃଷ୍ଟି କରିଥିଲେ ।

କମଳ ଅପା ଆଜି ଆମ ଗହଣରେ ନାହାନ୍ତି । କିନ୍ତୁ ତାଙ୍କର ବହୁମୁଖୀ ପ୍ରତିଭା ପାଇଁ ସେ ସମସ୍ତଙ୍କର ପ୍ରିୟ ହୋଇ ରହିଥିବେ । ତାଙ୍କର ଆତ୍ମାର ସଦ୍‌ଗତି ପାଇଁ ମୁଁ ଭଗବାନଙ୍କଠାରେ ପ୍ରାର୍ଥନା କରୁଛି ।

ଙଙଙ

# କମଳ ଅପାଙ୍କ ସ୍ମୃତିରେ

**କିଶୋର ଶତପଥୀ**

ଆଗମନ ଏବଂ ପ୍ରସ୍ଥାନର ମଧ୍ୟବର୍ତ୍ତୀ ସମୟ ହେଉଛି ଜୀବନ । ଯାହାର ଆଗମନ ଅଛି,ତାହାର ପ୍ରସ୍ଥାନ ନିଶ୍ଚୟ ହେବ । ଏହା ହିଁ ହେଉଛି ମହାକାଳର ନିୟମ । ଏଥିରୁ କାହାର ମୁକ୍ତି ନାହିଁ । କେବଳ ମୋକ୍ଷରେ ହିଁ ମୁକ୍ତି ମିଳିଥାଏ । କମଳ ଅପାଙ୍କର ଆଗମନ ହୋଇଥିଲା ବିଗତ ଶତାବ୍ଦୀର ୩୦ ଦଶନ୍ଧିର ଶେଷାର୍ଦ୍ଧରେ ଏବଂ ପ୍ରସ୍ଥାନ ଘଟିଲା ଚଳିତ ଶତାବ୍ଦୀର ଦ୍ୱିତୀୟ ଦଶକର ଶେଷାର୍ଦ୍ଧରେ । ନିୟତିର ନିର୍ଦ୍ଦେଶନାରେ ସମୟ ସାଗରର ବେଳାଭୂମିରେ ସେ ଏହି ଯେଉଁ କେତେ ସମୟପାଇଁ ଅଭିନୟ କରିଗଲେ ତାହା ଥିଲା ଅତି ଚମତ୍କାର । ପ୍ରାରମ୍ଭରେ ତାଙ୍କ ସହିତ ଯେଉଁମାନେ ଅଭିନୟ କରିଥିଲେ ସେମାନଙ୍କ ମଧ୍ୟରୁ ଅନେକ ଚାଲିଗଲେଣି । ଆଉ ଆମ ଭଳି କିଛି ତାଙ୍କ ଜୀବନ ନାଟକର ଶେଷ ଅଙ୍କ ଦେଖିଲେ । ତାଙ୍କ ସହିତ ଆମ ସମୟର ଯେଉଁମାନେ ମିଶିବାର ସୁଯୋଗ ପାଇଥିଲେ ସେମାନଙ୍କ ନିମନ୍ତେ ସେ କେବଳ ଗିରିଜା ଭୂଷଣ ପଟ୍ଟନାୟକଙ୍କ ପତ୍ନୀ କିମ୍ବା ରେଭେନ୍ସା ମହାବିଦ୍ୟାଳୟର ଉଦ୍ଭିଦ ବିଜ୍ଞାନର ପ୍ରଫେସର ନଥିଲେ । ସେ ଥିଲେ ଜଣେ ଅସାଧାରଣ ମହିଳା । ଅସାଧାରଣ ଏଇଥିାଇଁ ଯେ ଗିରିଜା ବାବୁଙ୍କ ପରି ଜଣେ ଅବୁଝା ବ୍ୟକ୍ତିଙ୍କୁ ନିୟନ୍ତ୍ରଣ କରିବାର କ୍ଷମତା ତାଙ୍କର ଥିଲା । ଉଭୟଙ୍କର ଉଦ୍ୟମ ଏବଂ ଅଧ୍ୟବସାୟ ଯୋଗୁ ଦି ୟୁନିଭର୍ସ ଏକଦା ଦେଶ ବିଦେଶରେ ଚର୍ଚ୍ଚା ସୃଷ୍ଟି କରିବାର ସୌଭାଗ୍ୟ ଲାଭ କରିଥିଲା ।

ଘଟଣା ଚକ୍ରରେ ୧୯୭୮ ମସିହାର ଶେଷାର୍ଦ୍ଧରେ 'ଦି ୟୁନିଭର୍ସ'ରେ ଯୋଗ ଦେବାର ସୁଯୋଗ ମତେ ମିଳିଥିଲା । ପ୍ରଥମ ଦେଖାରେ ଗିରିଜା ବାବୁ ମତେ ବେଶ ପ୍ରଭାବିତ କରି ଦେଇଥିଲେ । ସନ୍ତୋଷଭାଇଙ୍କ ସହିତ ମିଶିବାକୁ ଦୁଇଚାରିଦିନ ଲାଗିଯାଇଥିଲା । ପ୍ରାୟ ୧୫ ଦିନ ପରେ ଦିନେ ସକାଳେ ଆସିବାକୁ ଗିରିଜାବାବୁ ନିର୍ଦ୍ଦେଶ ଦେଲେ । ତାହା ଥିଲା ରବିବାର । ମୁଁ ୟୁନିଭର୍ସରେ ପହଞ୍ଚି ଦେଖିଲି ସନ୍ତୋଷ ଭାଇ ପହଞ୍ଚି ଯାଇଛନ୍ତି । ମତେ ଦେଖିବା ମାତ୍ରେ କହିଲେ ଚାଲ ଯିବା । ଗିରିଜା ବାବୁ ଘରେ ଅପେକ୍ଷା କରିଛନ୍ତି । ଘରେ ପହଞ୍ଚିବା ମାତ୍ରେ ଆମକୁ ଜଣେ ମହିଳା ସ୍ୱାଗତ କଲେ । ତାଙ୍କ ମୁଖମଣ୍ଡଳରେ ଜ୍ଞାନର ଦିପ୍ତି ଝଲସି ଉଠୁଥିଲା । କପାଳରେ ଲାଲ ଟିକିଲି ଦାଉଦାଉ କରି ଉଠୁଥିଲା । ପ୍ରଣାମ କରିବାକୁ ହାତ ଆପେଆପେ ଉଠିଗଲା । ସନ୍ତୋଷ ଭାଇ ତାଙ୍କ ସହିତ ମୋର ପରିଚୟ କରାଇଦେବାକୁ ଯାଇ କହିଲେ କମଳ ଇଏ ହେଉଛି କିଶୋର । କମଳ ଅପା କହିଥିଲେ,ଜାଣିଛି । ଗିରିଜାବାବୁ କିଶୋର ବାବୁଙ୍କ ସଂପର୍କରେ କହୁଥିଲେ । ବାସ ସେଇଦିନ ଠାରୁ ସେ ମୋର ମଧ୍ୟ କମଳ ଅପା ହୋଇଗଲେ । ସନ୍ତୋଷ ଭାଇ ଭିତରକୁ ପଶିଗଲେ ଏବଂ ମତେ ମଧ୍ୟ ଯିବାକୁ କମଳ ଅପା କହିଲେ । ଖାଇବା ଟେବୁଲ ଉପରେ ଗିରିଜା ବାବୁ ଆମକୁ ଅପେକ୍ଷା କରିଥିଲେ । ସେହି ଖାଇବା ଟେବୁଲ ଉପରେ ସେଦିନ ସକାଳେ ଥିଲା ମୋର ପ୍ରଥମ ଭୋଜନ । ୧୯୭୮ରୁ ୧୯୮୨ ମଧ୍ୟରେ ସେହି ଟେବୁଲ ଉପରେ କମଳ ଅପାଙ୍କ ହାତରୁ ଅନେକ ଥର ଖାଇବାର ସୁଯୋଗ ମିଳିଛି । ଓଡିଶାର ବହୁ ପ୍ରଖ୍ୟାତ ବ୍ୟକ୍ତିମାନଙ୍କ ସହିତ ମିଶିବାର ସୁଯୋଗ ମଧ୍ୟ ମିଳିଛି ।

କାମ ନେବାରେ ଗିରିଜା ବାବୁ ସିଦ୍ଧ ହସ୍ତ ଥିଲେ । ଏଥି ପାଇଁ ଅନେକ ସମୟରେ କିଛି ବନ୍ଧୁଙ୍କ ସହିତ ତାଙ୍କର ଉଚ୍ଚବାଚ ହୋଇଯାଏ । କମଳ ଅପାଙ୍କ ହସ୍ତକ୍ଷେପ ଫଳରେ ତାହାର ସମାଧାନ ହୋଇଯାଏ । ମନେ



ଅଛି ଥରେ 'ପ୍ରିଣ୍ଟୋଭର୍ସ'ରେ ବିଜ୍ଞାପନକୁ କେନ୍ଦ୍ରକରି ଏକ ବୈଠକରେ ଗିରିଜା ବାବୁ ଏବଂ ଚିତ୍ତରଂଜନ ଦାସଙ୍କ ମଧ୍ୟରେ କଥା କଟାକଟି ହୋଇଗଲା । ସେହି ପତ୍ରିକାର ସଂପାଦକ ଥିଲେ ଚିତ୍ତବାବୁ ଏବଂ ମୁଁ ଥିଲି ସହସଂପାଦକ । ପରିସ୍ଥିତି ଏପରି ହେଲା ଯେ ଚିତ୍ତବାବୁ କହିଲେ ଆଜି ଠାରୁ ସେ ଆଉ ସଂପାଦକ ନୁହଁନ୍ତି । ହରିଶ ବାବୁ,ସନ୍ତୋଷ ଭାଇ ଏବଂ ମୁଁ ଯେତେ ବୁଝାଇଲେ ମଧ୍ୟ ଦୁର୍ବାସା ଚିତ୍ତବାବୁ ଶାନ୍ତ ହେଲେ ନାହିଁ । ହରିଶ ବାବୁ ଏବଂ ଚିତ୍ତ ବାବୁ କଥା ହେଉଥାଆନ୍ତି । ଗିରିଜାବାବୁ ମନ ଦୁଃଖରେ ବସିଥାଆନ୍ତି । କାରଣ ଉଭୟ ପରସ୍ପରକୁ ଖୁବ ଭଲ ପାଆନ୍ତି । କିଏ ଚିତ୍ତବାବୁଙ୍କୁ ବୁଝାଇବ । ଏହି ସମୟରେ ଫୋନ ବାଜିଲା । ହରିଶ ବାବୁ ଫୋନ ଉଠାଇ ଚିତ୍ତ ବାବୁଙ୍କୁ ଦେଲେ । କଥା ହେଉଥିବା ବେଳେ ମୁଁ ଦେଖିଲି ଚିତ୍ତବାବୁ ହସିଦେଲେ । ତାଙ୍କ ମୁହଁରୁ ସତେ ଯେପରି ସବୁ ରାଗ ଧୋଇହୋଇଯାଇଛି । ଗିରିଜା ବାବୁଙ୍କୁ ଚାହିଁ କହିଲେ କଣ ସେପଟକୁ ଖବର ପଠାଇଦେଇ ଏଠାରେ ଚୁପ ହୋଇ ବସିଯାଇଛନ୍ତି । ମୁଁ କିଛି ବୁଝିପାରୁନଥାଏ । ହରିଶ ବାବୁଙ୍କୁ ଚାହିଁବାରୁ ସେ କହିଲେ କମଳ ମ୍ୟାଡମ ଫୋନ କରିଥିଲେ । କମଳ ଅପା ଚିତ୍ତ ବାବୁଙ୍କୁ ଘରକୁ ଖାଇବାକୁ ଡାକିଥିଲେ । ଆମେ ତିନି ଜଣ ମଧ୍ୟ ଯାଇଥିଲୁ । କମଳ ଅପା ସାଉଥ ଇଣ୍ଡିୟାନରୁ ଖାଇବା ମଗାଇଦେଇଥିଲେ । ବାସ୍ତବରେ ସେ ଥିଲେ ଆମ ଅନୁଷ୍ଠାନର ସଂକଟ ମୋଚକ । ତାଙ୍କୁ କେବେ କେହି ରାଗିବାର ଦେଖିନାହିଁ । ତେବେ ମଣିଷ ହୋଇ ରାଗକୁ କିଏବା ଜିତିଛି ? ଯଦି କେବେ କୌଣସି କଥାରେ ଅମତ ହେଉଥିଲେ ତେବେ ଆଖି ମିଟିମିଟି କରି ଚାଲିଯାଉଥିଲେ । ସବୁଠାରୁ ଆଶ୍ଚର୍ଯ୍ୟ ଲାଗୁଥିଲା କୁନିପୁଅ ( ଆଜିର ବ୍ୟାପ୍ତି)ପରି ଚଗଲା ଏବଂ ଜିଦ୍‌ଖୋରକୁ ସେ ସଂଭାଳିଥିଲେ । ପ୍ରଜ୍ଞା ସହିତ ତାହାର ସବୁବେଳେ ଲାଗିଥିବ । ଗିରିଜାବାବୁ କେବେକେବେ ପ୍ରଜ୍ଞାକୁ ତାଗିଦ କରିଦେବା ଦେଖିଛୁ । ତାହାର ପ୍ରଭାବ ପଡୁନଥିଲା । କମଳ ଅପା କିନ୍ତୁ ସାମାନ୍ୟ ତାଗିଦ କରିଦେଲେ କୁନିପୁଅ ଚୁପ ହୋଇଯାଉଥିଲା । ସେହି କୁନିପୁଅ ଏତେ ଦାୟିତ୍ୱବାନ ହୋଇ କାମ କରିବ ବୋଲି କିଏ ହୁଏତ ଭାବିଥିବ,ମୁଁ କିନ୍ତୁ ମୋଟେ ନୁହେଁ । ବୋଧେ କମଳ ଅପାଙ୍କ ପୁଅ ବୋଲି ସେ ଏପରି ହୋଇପାରିଲା । ଭଲ ପାଇବାର ପ୍ରତିଦାନ ତ ନାହିଁ । ଥରେ କମଳ ଅପା କାହିଁକି କେଜାଣି ମତେ ୫୦ ଟଙ୍କା ଦେଇ ଶ୍ରଦ୍ଧାର ସହିତ କହିଥିଲେ କିଶୋର ବାବୁ କିଛି ଖରାପ ଭାବିବେ ନାହିଁ ଏଥିରେ ଗୋଟେ ଜାମା କିଣିବେ । ଯେତେ ମନାକଲି ଶୁଣିଲେ ନାହିଁ । ଗିରିଜାବାବୁ ଚାହିଁ ଥାଆନ୍ତି । ସନ୍ତୋଷ ଭାଇ ହସୁଥାଏ । ବାଧ୍ୟ ହୋଇ ଟଙ୍କା ନେଲି ଏବଂ ପରଦିନ ନୂଆ ଜାମା ପିନ୍ଧି ତାଙ୍କୁ ନମସ୍କାର କରିବାକୁ ଯାଇଥିଲି । ତାଙ୍କ ଘରେ ଯେତେବେଳେ ପହଞ୍ଚିଲେ ଖାଇବା ନିଶ୍ଚିତ ମିଳୁଥିଲା । ମୋର ସେହି ସମୟଟା ବି ଖୁବ କଷ୍ଟକର ଥିଲା । ୟୁନିଭର୍ସ ପରିବାରର ମତେ ମନୋବଳ ଦେଇ ବହୁତ ସାହାଯ୍ୟ କରିଛି । ବିଶେଷକରି ଗିରିଜାବାବୁ ଏବଂ କମଳ ଅପାଙ୍କ ଶ୍ରଦ୍ଧା ନିକଟରେ ମୁଁ ଋଣୀ । ସ୍ମୃତି ତ ଭୁଲିହୁଏ ନାହିଁ । ସବୁ କଥା କିନ୍ତୁ ଠିକଣା ସମୟରେ ମନେ ପଡେନାହିଁ । ଏବେ କୁନିପୁଅ ଉପରେ ଅନେକ ଦାୟିତ୍ୱ । ଗିରିଜାବାବୁ ଏବଂ କମଳ ଅପାଙ୍କ ମାନସ ସନ୍ତାନ ଦି ୟୁନିଭର୍ସକୁ ଆଗେଇ ନେବାକୁ ଈଶ୍ୱର ତାଙ୍କୁ ଆଶୀର୍ବାଦ କରନ୍ତୁ । ଏହି ଅଭିଯାନରେ ସାମିଲ ହୋଇ ଯଦି କିଛି କରିପାରିବି ତେବେ ତାହା ହୁଏତ ସେମାନଙ୍କ ପ୍ରତି ଥିବା ମୋ ଋଣଭାର କିଛିଟା ଲାଘବ ହୋଇପାରନ୍ତା । ତେବେ ମୋର ବି ବୟସ ହୋଇଯାଇଚି ।

◆◆◆

# କମଳଠାରୁ ଅଧିକ ତେଜଦୀପ୍ତ 'କମଳ ମ୍ୟାଡ଼ମ'

**ଡକ୍ଟର ପ୍ରମୋଦ କୁମାର ମହାପାତ୍ର**

୧୯୭୬ ମସିହା । ଉଦ୍ଭିଦ ବିଜ୍ଞାନ ସ୍ନାତୋକତ୍ତୋର ଶ୍ରେଣୀର ଛାତ୍ର ଭାବେ ଯୋଗଦେବା ପରେ ଅନ୍ୟମାନଙ୍କ ସହ ପରିଚିତ ହେବାପାଇଁ ଆୟୋଜିତ ସ୍ୱାଗତ ଉତ୍ସବରେ ମୋତେ ଯେଉଁ ପି.ଜି ଶ୍ରେଣୀର ବରିଷ୍ଠ ଅଧ୍ୟାପିକାଙ୍କ ବ୍ୟକ୍ତିତ୍ୱ ଗଭୀର ଭାବେ ପ୍ରଭାବିତ କରିଥିଲା ସେ ଥିଲେ ମୋର ପି.ଜି ଶ୍ରେଣୀର ଶିକ୍ଷାଦାତ୍ରୀ ଡକ୍ଟର କମଳ କୁମାରୀ ପଟ୍ଟନାୟକ । କମଳ ପରି ସେ ସରଳ, ସୁନ୍ଦର, ଅତ୍ୟନ୍ତ ଉଚ୍ଚ ବ୍ୟକ୍ତିତ୍ୱର ଯେ ଅଧିକାରୀ ଥିଲେ ତାହା ନୁହେଁ, ଅତ୍ୟନ୍ତ କୋମଳ, ଶାନ୍ତ ତଥା ମା' ପରି ସବୁ ଛାତ୍ରଛାତ୍ରୀଙ୍କ ଦେଖୁଥିବା, ସେମାନଙ୍କ ଅଭାବ ଅସୁବିଧା ବୁଝୁଥିବା ଜଣେ ନୀତିନିଷ୍ଠ ଅଧ୍ୟାପିକା ଥିଲେ । ପରିଜା ପି.ଜି ଡିପାଟମେଣ୍ଟରେ ଥିବା ତାଙ୍କର ଅଫିସ ଗୃହ ମଧ୍ୟକୁ ଛାତ୍ରଛାତ୍ରୀଙ୍କର ଅବାଧ ପ୍ରବେଶ ଥିଲା । ତାଙ୍କ ରୁମକୁ ଲାଗି ଆଉ ୩ ଜଣ ବରିଷ୍ଠ ପ୍ରଫେସରଙ୍କ କୋଠରୀ ମଧ ଥିଲା । ସେମାନେ ହେଲେ ପ୍ରଫେସର ଲକ୍ଷ୍ମଣ କୁମାର ମହାପାତ୍ର, ପ୍ରଫେସର ଚନ୍ଦ୍ରଶେଖର ଷଡ଼ଙ୍ଗୀ ଓ ପ୍ରଫେସର ବ୍ରଜକିଶୋର କର । ବିଭାଗୀୟ ମୁଖ୍ୟ ପ୍ରଫେସର ଦୀନବନ୍ଧୁ ମିଶ୍ରଙ୍କ କୋଠରୀ ଉଦ୍ଭିଦ ବିଜ୍ଞାନ ବିଭାଗର ଗ୍ରାଜୁଏଟ ଶିକ୍ଷାଦାନ ଚାଲୁଥିବା ପାର୍ଶ୍ୱରେ ରହିଥିଲା । ତାଙ୍କର ଶିକ୍ଷାଦାନ ପଦ୍ଧତି ମଧ ଥିଲା ଅଲୌକିକ । ସେ ଯାହା ପଢ଼ାଉଥିଲେ ସେଥିରେ ଛାତ୍ରଛାତ୍ରୀଙ୍କର କୌଣସି ସନ୍ଦେହ ରହିଲେ ସେମାନେ ତାଙ୍କୁ ଯେକୌଣସି ମୁହୂର୍ତ୍ତରେ ପଚାରି ବୁଝିପାରୁଥିଲେ ।

ରେଭେନ୍ସାରେ ପ୍ରାୟ ୩ ବର୍ଷ ସମୟକାଳ ମଧ୍ୟରେ ସେ ହିଁ ମୋତେ ବହୁଭାବେ ସାହାଯ୍ୟ କରିଥିଲେ । ପରବର୍ତ୍ତୀ କାଳରେ 'ସମାଜ' ଅନୁଷ୍ଠାନରେ ମୁଁ କାର୍ଯ୍ୟ କରିବା ବେଳେ ମ୍ୟାଡ଼ମଙ୍କ ସହିତ ଆହୁରି ସମ୍ପର୍କ ବଢ଼ିଥିଲା । 'ୟୁନିଭର୍ସ' ସହିତ ତଥା ପ୍ରଖ୍ୟାତ ବାଗ୍ମୀ, ସମାଜସେବୀ ସମ୍ମାନୀୟ ଗିରିଜାବାବୁଙ୍କ ସହିତ ମୋର ସାକ୍ଷାତପରେ ମୁଁ ଏହି ପରିବାରର ଜଣେ ସଦସ୍ୟ ପାଲଟିଯାଇଥିଲି । ମ୍ୟାଡ଼ମ୍‌ଙ୍କ ଔଷଧବୃକ୍ଷ ସମ୍ପର୍କିତ ଗବେଷଣାତ୍ମକ କାର୍ଯ୍ୟ ତଥା ଲୋକମାନଙ୍କୁ ବିଭିନ୍ନ ଔଷଧ ବୃକ୍ଷ ସମ୍ପର୍କରେ ସୂଚନା ପ୍ରଦାନ ସହ ମୁଁ ମଧ ସଂଶ୍ଳିଷ୍ଟ ହୋଇଥିଲି । ତାଙ୍କର ପ୍ରେରଣାରେ ୧୯୮୭ ମସିହାରେ ମୁଁ 'ଓଡ଼ିଶାର ଔଷଧ ବୃକ୍ଷ' ପୁସ୍ତକ ଲେଖିଥିଲି ଯାହା ବହୁବାର ଛାପାହୋଇ ପାଠକଙ୍କଦ୍ୱାରା ଆଦୃତ ହୋଇଥିଲା । ମୋ'ଦ୍ୱାରା ଲିଖିତ ଅନେକ ବିଜ୍ଞାନ ପ୍ରବନ୍ଧ 'ସମାଜ'ରେ ପ୍ରକାଶ ପାଇବା ପରେ ମ୍ୟାଡ଼ମ ହିଁ ମୋତେ ଟେଲିଫୋନ କରି ପ୍ରଶଂସା ସୂଚକ କେତେପଦ କଥା କହି ଉତ୍ସାହିତ କରୁଥିଲେ ଓ ଅଧିକ ଲେଖିବା ପାଇଁ ପ୍ରେରଣା ଦେଉଥିଲେ । ସେ ମଧ ଥିଲେ ଜଣେ ବରିଷ୍ଠ ବିଚକ୍ଷଣ ବକ୍ତା । ଅନେକ ଆନ୍ତର୍ଜାତିକ ସମ୍ମିଳନୀରେ ସେ ବିଦେଶୀ ଅତିଥିଙ୍କ ଗହଣରେ ଭାରତୀୟ ପରମ୍ପରା, ଉଦ୍ଭିଦମଣ୍ଡଳ, ସଂସ୍କାର, ସଂସ୍କୃତି ସମ୍ପର୍କରେ ଓଜୋସ୍ୱିନୀ ଭାଷଣ ପ୍ରଦାନ କରି ଆମଭଳି ତାଙ୍କର ଛାତ୍ରଛାତ୍ରୀମାନଙ୍କୁ ଗୌରବାନ୍ୱିତ କରୁଥିଲେ । ଏତେସବୁ ଜ୍ଞାନ ଗାରିମାର ଅଧିକାରୀ ଥିଲେ ମଧ କେବେ ମଧ

ତାଙ୍କଠାରେ କୌଣସି ଗର୍ବ ଭାବ କେହି ଦେଖିନଥିଲେ । ହସହସ ମୁହଁ, ନରମ କଥା ତଥା ବିଚକ୍ଷଣ ଧୂରୀଣ କାର୍ଯ୍ୟଦକ୍ଷତା ଥିଲା ତାଙ୍କର ସ୍ୱାତନ୍ତ୍ର୍ୟ। ଏକ ପ୍ରତିଷ୍ଠିତ ପରିବାରର କନ୍ୟା ଥିଲେ ମ୍ୟାଡ଼ମ। ବିବାହ କରିଥିଲେ ଜଣେ ବିଜ୍ଞ ବୁଦ୍ଧିଜୀବୀଙ୍କୁ। ସେ ଭଲପାଉଥିଲେ ପ୍ରକୃତିକୁ, ପରିବେଶକୁ ଗଭୀରଭାବେ।

ଏହିଭଳି ଜଣେ ପ୍ରକୃତିପ୍ରେମୀ, ଆଜୀବନ ଉଦ୍ଭିଦଙ୍କ ଉପରେ ଗବେଷଣା କାର୍ଯ୍ୟ କରିଥିବା, ଉଦ୍ଭିଦ ଜଗତକୁ ଭଲପାଇବା ସହିତ ସେମାନଙ୍କୁ ଭଲପାଇ ତାଙ୍କଠାରୁ ମିଳୁଥିବା ସେବା ଗ୍ରହଣ କରିବାକୁ ସାଧାରଣ ଜନତାଙ୍କୁ ଆହ୍ୱାନ ଦେଇ ଆସିଥିବା ଜଣେ ସୁନାମଧନ୍ୟା ଅଧ୍ୟାପିକାଙ୍କର ବିୟୋଗ ବାସ୍ତବିକ ଆମଭଳି ତାଙ୍କ ଛାତ୍ରଛାତ୍ରୀଙ୍କ ପାଇଁ ଏକ ଦାରୁଣ କ୍ଷତି। ସମାଜ ପାଇଁ ତାଙ୍କର ବିଲୟ ଅପୂରଣୀୟ କ୍ଷତି ନିଶ୍ଚିତ ବୋଲି କୁହାଯାଇବ। ଆଜି କମଳ ମ୍ୟାଡ଼ମଙ୍କ ବହୁବିଧ କାର୍ଯ୍ୟକଳାପର ସ୍ମୃତି ମନେପକାଇବା ବେଳେ ସ୍ୱତଃ ସେଦିନର ଅନେକ ଅଭୁଲା କଥା ମନମଧକୁ ଆସିଯାଉଛି। ତାଙ୍କଭଳି ଶିକ୍ଷକଙ୍କ ଗୁଣ ଯେତେ ଗର୍ବ କଲେ ମଧ ତାର ଶେଷ ନାହିଁ। ଜଣେ ଗବେଷଣା ପରାମର୍ଶଦାତା ଭାବେ ଶହ ଶହ ଗବେଷକ ଛାତ୍ରଛାତ୍ରୀଙ୍କ ମାନସପଟ୍ଟରେ ସେ ଚୀରକାଳ ପାଇଁ ଜାଜ୍ୱଲ୍ୟମାନ ହୋଇ ରହିଛନ୍ତି ଓ ରହିବେ।

ମ୍ୟାଡ଼ମଙ୍କର ଜଣେ ଅତ୍ୟନ୍ତ ସ୍ନେହଶୀଳ ଛାତ୍ର ଭାବେ ମୁଁ ଆଜି ତାଙ୍କର ଅସ୍ତମିତ କଥା ଶୁଣି ଗଭୀର ଭାବେ ମର୍ମାହତ। ହେଲେ ବିଧିର ବିଧାନକୁ ଆମକୁ ସମ୍ମାନ ଦେବାକୁ ହେବ ଓ ସ୍ୱୀକାର କରିବାକୁ ହେବ। ମ୍ୟାଡ଼ମଙ୍କ ସ୍ମୃତି ଅମର ରହୁ - ତାଙ୍କର କାର୍ଯ୍ୟକଳାପ ଭବିଷ୍ୟତ ବଂଶଧରଙ୍କ ପାଇଁ ଅନୁକରଣୀୟ ହେଉ ଏହା ହିଁ କାମନା କରୁଛି।

◆◆◆

# କମଳ ମ୍ୟାଡ଼ାମ୍ - ମୋ' ପାଇଁ ଏକ ଅଭୁଲା ବ୍ୟକ୍ତିତ୍ୱ

**ପ୍ରଫେସର ପଦନ କୁମାର ଜେନା**

ସନ୍ଧ୍ୟାବେଳେ ଘରକୁ ଫେରି ସବୁଦିନ ପରି ମୋବାଇଲଟା ଟିପାଟିପି କରୁକରୁ ହଠାତ୍ ଏକ ମେସେଜ୍ ସୋସିଆଲ ମିଡ଼ିଆରେ ଦେଖି ଚମକିପଡ଼ିଲି । ରେଭେନ୍ସା ଉଦ୍ଭିଦବିଜ୍ଞାନ ପୁରାତନ ଛାତ୍ରସଂସଦ (Botanists' Association of Ravenshaw 'BARC') siteରେ ଥିଲା । "ଆମ ସମସ୍ତଙ୍କର ଅତିପ୍ରିୟ କମଳ ମ୍ୟାଡ଼ାମ୍ ଚାଲିଗଲେ ।" ସମ୍ବାଦଟିକୁ ବିଶ୍ୱାସ କରିପାରିଲିନି ଯଦିଓ ଜାଣିଥିଲି ବହୁଦିନ ଧରି ସେ ଅସୁସ୍ଥଥିଲେ ବୋଲି । କାହାକୁ ପଚାରିବି ଭାବୁ ଭାବୁ ଭାରତୀ ମ୍ୟାଡ଼ାମ (ପ୍ରଫେସର ଭାରତୀ ବେହେରା)ଙ୍କ କଥା ମନକୁ ଆସିଲା । ତାଙ୍କୁ ଫୋନ କରି ପଚାରିଲି । ମ୍ୟାଡ଼ାମ୍‌ଙ୍କ ସ୍ୱର ବି ଗମ୍ଭୀର ଓ ବାଷ୍ପରୁଦ୍ଧ ପରି ମନେ ହେଉଥିଲା । ସ୍ଥିର କଲୁ ଆମର ଅତିପ୍ରିୟ କମଳ ମ୍ୟାଡ଼ାମ୍‌ଙ୍କୁ ଟିକେ ଶେଷଦର୍ଶନ କରିବା ପାଇଁ । ଭାରତୀ ମ୍ୟାଡ଼ାମ୍, ମୁଁ ଓ ପ୍ରଫେସର ପ୍ରିୟମ୍ବଦା ମହାନ୍ତି ହେଜ୍‌ମାଦି ମ୍ୟାଡ଼ାମ୍‌ଙ୍କ ଘରକୁ ଗଲୁ । ସେତେବେଳକୁ ପ୍ରାୟ ରାତି ଆଠଟା । ଘର ଭିତରେ ସମ୍ପୂର୍ଣ୍ଣ ନୀରବତା । ନିଜର ଅତି ଆପଣାର ଲୋକକୁ ହରାଇ ସମସ୍ତେ ନିରବ । ଭିତରେ ମ୍ୟାଡ଼ାମ୍‌ଙ୍କ ନିଶ୍ଚଳ ଶରୀର । ସତେ ଯେମିତି ସବୁଦିନ ପାଇଁ ଶାନ୍ତିରେ ଶୋଇଯାଇଛନ୍ତି । ମୁଖମଣ୍ଡଳର ଜ୍ୟୋତି ସେମିତି ପ୍ରସ୍ଫୁଟିତ, ଯେମିତି ଅନ୍ୟଦିନମାନଙ୍କରେ । ବହୁଦିନର ଅସୁସ୍ଥତା ତାଙ୍କର ଜ୍ୟୋତିକୁ ଟିକେ ବି ଲୁଚାଇ ପାରିନଥିଲା । ପାଖରେ ଝିଅ 'ପ୍ରଜ୍ଞା' । ମନର କୋହକୁ ଲୁଚାଇ ଟିକେ କ'ଣ କହିବାକୁ ବାଧହେଲା ବୋଧହୁଏ । ମୁଁ କିନ୍ତୁ କିଛି ସମୟ ହତ୍‌ବାକ୍‌ହୋଇ ଠିଆହୋଇ ରହିଲି । ମନେ ମନେ ଭାବୁଥିଲି, ଅତୀତର ଅନେକ କଥା । ଅତୀତର ଅନେକ ସ୍ମୃତି, ମୋ' ମନକୁ ବିଚଳିତ କରୁଥିଲା । ମନ ଫେରିଯାଉଥିଲା ୧୯୯୦ ମସିହା ଅଗଷ୍ଟ ମାସର ଏକ ସକାଳକୁ ।

କମଳ ମ୍ୟାଡ଼ାମ୍‌ଙ୍କ ସହ ମୋର ସମ୍ପର୍କ ବୋଧହୁଏ ୧୯୯୦ ମସିହାରୁ । ଅବଶ୍ୟ ତା' ପୂର୍ବରୁ ତାଙ୍କ ବିଷୟରେ ଅନେକ କିଛି ଶୁଣିଥିଲି । ଜଣେ ଅତି ସ୍ନେହୀ ମଣିଷ, ସୁନାମଧନ୍ୟା ପ୍ରଫେସର ଓ ଜୀବରସାୟନବିତ୍ । ଶ୍ୱାସରୋଗ ପାଇଁ ଔଷଧ ଦେବାରେ ଓଡ଼ିଶାର ଘରେ ଘରେ ସେ ସୁପରିଚିତ ଥିଲେ । ତେଣୁ ଅନେକ ଶ୍ୱାସରୋଗୀ ତାଙ୍କର ନିୟମିତ ଚିକିତ୍ସାରେ ରହୁଥିଲେ । ୧୯୯୦ ମସିହା ଅଗଷ୍ଟ ମାସରେ ମୋର ବଦଳିହେଲା ରେଭେନ୍ସା ମହାବିଦ୍ୟାଳୟକୁ । ସେତେବେଳେ ମ୍ୟାଡ଼ାମ୍ ଥାଆନ୍ତି ଉଦ୍ଭିଦବିଜ୍ଞାନ ବିଭାଗର ପ୍ରଫେସର ଓ ବିଭାଗୀୟ ମୁଖ୍ୟ । ପ୍ରଥମ ଦିନରୁ ହିଁ ତାଙ୍କ ପ୍ରତି ମୋର ଗଢ଼ିଉଠିଥିଲା ପ୍ରଗାଢ଼ ଭକ୍ତି ଓ ଭଲ ପାଇବା । ଅତ୍ୟନ୍ତ ଗାମ୍ଭୀର୍ଯ୍ୟପୂର୍ଣ୍ଣ ଚେହେରା କିନ୍ତୁ କଥାଗୁଡ଼ା ପୂରା ସ୍ନେହବୋଳା । ବିଭାଗରେ ସେ ସମୟରେ ଉଣେଇଶ ଜଣ ଅଧ୍ୟାପକ, ଅଧ୍ୟାପିକା । କ୍ରମାନ୍ୱୟରେ ମୋର ସ୍ଥାନ ଥିଲା ଅଠର । ମ୍ୟାଡ଼ାମ୍‌ଙ୍କର ସମସ୍ତେ ଥିଲେ ଅତିପ୍ରିୟ । ସମସ୍ତଙ୍କୁ ଅତି ସ୍ନେହରେ ପ୍ରଥମ ନାଁ ଧରି ଡାକନ୍ତି - ବେଣୁ, ନିର୍ମଳ, ସୁରେନ୍ଦ୍ର, କଳିଙ୍ଗ, ଆୟୁବ, ଦେବ ଇତ୍ୟାଦି । ସତେଯେମିତି ବିଭାଗଟା ଥିଲା ତାଙ୍କ ପରିବାର ଓ ସେ ଥିଲେ ସେ ପରିବାରର ମୁଖ୍ୟ । ପ୍ରକୃତରେ ସେ ଯେଉଁ ପରମ୍ପରା ସୃଷ୍ଟି କରି ଯାଇଛନ୍ତି ତାହା ଆଜିପର୍ଯ୍ୟନ୍ତ ବିଭାଗରେ ପରିସ୍ଫୁଟ । ରେଭେନ୍ସାର ଉଦ୍ଭିଦବିଜ୍ଞାନ ବିଭାଗ ଆଜି ବି ଏକ ପରିବାର ।

କମଳ ମ୍ୟାଡ଼ାମ୍ ଥିଲେ କର୍ମତତ୍ପର, ଜଣେ କର୍ମନିଷ୍ଠ ମହିଳା । ସେ ବୋଧହୁଏ ଗୋପବନ୍ଧୁଙ୍କର ସେହି ପଂକ୍ତିକୁ ମର୍ମେ ମର୍ମେ ଉପଲବ୍ଧି କରିଥିଲେ ଓ ନିଜ ଜୀବନରେ ଉପଯୋଗ କରୁଥିଲେ ।

"ମଣିଷ ଜୀବନ ନୁହଁଇ କେବଳ ବର୍ଷ, ମାସ, ଦିନ, ଦଣ୍ଡ
କର୍ମେ ଯିଏ ନର, କର୍ମ ଏକା ତାର ଜୀବନର ମାନଦଣ୍ଡ ।"

ମ୍ୟାଡ଼ାମ୍ ଥିଲେ ଜଣେ ଉଚ୍ଚକୋଟୀର ପ୍ରଫେସର । ଦକ୍ଷ ପ୍ରଶାସିକା, ଜଣେ ଅନୁସନ୍ଧିତ୍ସୁ ବୈଜ୍ଞାନିକ, ସୁଲେଖିକା ଓ ସର୍ବୋପରି ଜଣେ ଆଦର୍ଶ ମଣିଷ । ଜଣେ ଦକ୍ଷ ପରିଚାଳିକା ହିସାବରେ ସମସ୍ତଙ୍କୁ ଏକାଠି କରି ଆଗକୁ ବଢ଼ିଚାଲିବାର ତାଙ୍କ ପାଖରେ ଥିବା ଦୃଢ଼ ଇଚ୍ଛାଶକ୍ତି ।

ଏସବୁ ଲେଖୁ ଲେଖୁ ନିଜ ଅନୁଭୂତିରୁ ଦି'ପଦ ନଲେଖିଲେ ମନ ବୁଝୁନି । ମ୍ୟାଡ଼ାମ୍ ଥିଲେ ମୋ' ପାଇଁ ମାତୃତୁଲ୍ୟା । ସମସ୍ତେ ତାଙ୍କୁ 'କମଳ ଅପା' ବୋଲି ଡାକନ୍ତି । ମୁଁ କିନ୍ତୁ ଡାକେ 'ମ୍ୟାଡ଼ାମ୍' । ମୋତେ କିନ୍ତୁ ବହୁତ ଭଲ ପାଉଥିଲେ ମ୍ୟାଡ଼ାମ୍ । ମୋର ସେ ସମୟର ଚେହେରା କୁଆଡ଼େ 'କୁନିପୁଅ' (ବ୍ୟାପ୍ତି) ସହିତ ସାମଞ୍ଜସ୍ୟ ଥିଲା । ସେ ଅନେକଥର କହୁଥିଲେ "ଏଇଟା ମୋର କୁନିପୁଅ ପରି ଦେଖାଯାଉଛି ।" ସତରେ ସେ କଥା କେବେ ଭୁଲିବାର ନୁହେଁ । ଆଜି ସେ କଥା ଭାବିଲେ କଣ୍ଠ ବାଷ୍ପରୁଦ୍ଧ ହୋଇଯାଉଛି । ଆଉ ଏକ ଅନୁଭୂତି, ସେ କଥା ନିଶ୍ଚୟ କହିବି । ୧୯୯୨ ମସିହା ଡିସେମ୍ବର ମାସରେ ମୁଁ ମୋ' ଝିଅ (ଆଲ୍‌ଫା)ର ଜନ୍ମଦିନ ଗାଁରେ ପାଳନ କରୁଥାଏ । ମ୍ୟାଡ଼ାମ୍‌ଙ୍କୁ ଅନୁରୋଧ କଲି ଗାଁକୁ ଯିବାପାଇଁ । ଉତ୍ତର ଥିଲା 'ଆରେ ନିଶ୍ଚୟ ଯିବି' । ସେତେବେଳେ ଗାଁକୁ ଭଲ ରାସ୍ତା ନଥାଏ । କଟକରୁ ପ୍ରାୟ ୨୦ କିଲୋମିଟର ଦୂର । ସତକୁ ସତ । ମ୍ୟାଡ଼ାମ୍, ସଂପାଶ୍ରୀ ମ୍ୟାଡ଼ାମ୍ ଓ ବିଭାଗର ଅନ୍ୟମାନଙ୍କୁ ନେଇ ଆମ ଘରେ ପହଞ୍ଚି ଥିଲେ । ତାଙ୍କର ସେଦିନର ଉପସ୍ଥିତି ମୋତେ ଯେ କେତେ ଆନନ୍ଦ ଦେଇଥିଲା ତାହା ଭାଷାରେ ପ୍ରକାଶ କରିବା ସମ୍ଭବ ନୁହେଁ । ସତରେ ଜଣେ ମହୀୟସୀ ମହିଳା, ଦକ୍ଷ, ପ୍ରଶାସିକା, ଯେ ଛୋଟରୁ ବଡ଼ ସମସ୍ତଙ୍କୁ ସମଦୃଷ୍ଟିରେ ଦେଖୁଥିଲେ । ଜଣେ ସହକର୍ମୀ ଓ କନିଷ୍ଠ ଶିକ୍ଷକ ହିସାବରେ ତାଙ୍କଠାରୁ ଅନେକ କିଛି ଶିଖିଛି । ବିଭିନ୍ନ କାର୍ଯ୍ୟରେ ତାଙ୍କ ଘରକୁ ଅନେକଥର ଆସିଛି । ହେଲେ ତାଙ୍କଭଳି ଜଣେ ସ୍ନେହୀ ମଣିଷ ମୁଁ ଖୁବ୍ କମ ଦେଖିଛି । ପ୍ରକୃତରେ ସେ ଥିଲେ ଏକ ଅଭୁଲା ବ୍ୟକ୍ତିତ୍ୱ । ସେ ଆଜି ନାହାଁନ୍ତି ସତ, କିନ୍ତୁ ଆମ୍ଭମାନଙ୍କ ପାଇଁ ମୋର ଓ ମୋ' ପରିବାର ପାଇଁ ସେ ଅପାସୋରା ମଣିଷ, ଚିର ଅମର ।

ଗୀତା ନିସୃତ ବାଣୀକୁ ମନେ ପକାଇ-

"ବାସାଂସି ଜୀର୍ଣ୍ଣାନୀ ଯଥାବିହାୟ
ନବାନି ଗୃହଣାତି ନରୋଃପରାଣି
ତଥା ଶରୀରାଣୀ ବିହାୟ ଜୀର୍ଣ୍ଣା,
ନ୍ୟନ୍ୟାନି, ସଂଯାତି ନବାନିଦେହୀ

ତାଙ୍କ ଅମର ଆତ୍ମାର ସଦ୍‌ଗତି କାମନା କରିବା ହିଁ ତାଙ୍କ ପାଇଁ ହେବ ଆଜି ଦିନର ଶ୍ରେଷ୍ଠ ଶ୍ରଦ୍ଧାଞ୍ଜଳି ।

•••

# ସମ୍ପର୍କର ସୂତାଖିଅ

**ଡକ୍ଟର ଗୋବିନ୍ଦ ଚନ୍ଦ୍ର ଚାନ୍ଦ**

ମଝିରେ ମଝିରେ 'ୟୁନିଭର୍ସ' ଯିବା ଭିତରେ ଗିରିଜା ଭୂଷଣ ପଟ୍ଟନାୟକ ଓ କମଳ କୁମାରୀ ପଟ୍ଟନାୟକଙ୍କ ସହ ସମ୍ପର୍କ। ଅବଶ୍ୟ ଏହି ସମ୍ପର୍କର ମୂଳ ମଣିଷ ହେଉଛନ୍ତି ବିଭୁବାବୁ, ବିଶିଷ୍ଟ ନାଟ୍ୟକାର ମନୋରଞ୍ଜନ ଦାସଙ୍କ ସାନଭାଇ। ମନୋରଞ୍ଜନ ଦାସଙ୍କ ସହ ନିବିଡ଼ ସମ୍ପର୍କ ହେତୁ ବିଭୁବାବୁଙ୍କ ସହ ସମ୍ପର୍କ। ସେ ୟୁନିଭର୍ସର ଜଣେ କର୍ମକର୍ତ୍ତା ଥିବାବେଳେ ବାରବାର ଅନୁରୋଧ କରନ୍ତି ୟୁନିଭର୍ସ ବିଭିନ୍ନ କାର୍ଯ୍ୟକ୍ରମରେ ଯୋଗଦେବା ପାଇଁ। ସେ ହିଁ ସମ୍ପର୍କ ଯୋଡ଼ିଦିଅନ୍ତି ଗିରିଜା ଭୂଷଣ ପଟ୍ଟନାୟକଙ୍କ ସହ। ତାଙ୍କ ବାସଭବନରେ କମଳ କୁମାରୀ ପଟ୍ଟନାୟକଙ୍କ ସହ ସାକ୍ଷାତ୍। ପ୍ରସନ୍ନ ମୁଖମଣ୍ଡଳ; ସେହି ମୁଖମଣ୍ଡଳରେ ସଂଭ୍ରାନ୍ତପଣର ଉଜ୍ଜ୍ୱଳ ଆଭା। କେତୋଟି ପଦର କଥାବାର୍ତ୍ତା ହିଁ ତାଙ୍କ ସହ ସମ୍ପର୍କ। ଗିରିଜାଭୂଷଣ ପଟ୍ଟନାୟକଙ୍କ 'ସାକ୍ଷାତକାର' ଓ 'ମନେପଡ଼େ ପିଲାଦିନ' ଲେଖାଟି ପ୍ରସ୍ତୁତବେଳେ କିଛି ସମୟ ବିତିଛି ତାଙ୍କ ବାସଭବନରେ। ସେହି ହିଁ ତାଙ୍କ ସହ ସମ୍ପର୍କ, ସେ ସମ୍ପର୍କର ସୂତାଖିଅଟିଏ ପରି।

ଗଞ୍ଜାମର ଭଞ୍ଜନଗର ଡକ୍ଟର କମଳ କୁମାରୀ ପଟ୍ଟନାୟକ ଜନ୍ମମାଟି। ମାତ୍ର କର୍ମକ୍ଷେତ୍ର କଟକ। ଉଦ୍ଭିଦ ବିଜ୍ଞାନରେ ସ୍ନାତକୋତ୍ତର ଶିକ୍ଷା ଓ ପିଏଚ୍.ଡି. ଡିଗ୍ରୀ ଲାଭ। ଅଧ୍ୟାପନା ଓ ଗବେଷଣାରେ ବିତିଛି ଜୀବନ। ନୂଆ ଅନୁଧ୍ୟାନ ଓ ଗବେଷଣାରେ ରୁଚି ରଖୁଥିବା ଡକ୍ଟର ପଟ୍ଟନାୟକ ନୂଆ ଏନ୍‌ଜାଇମ୍ ଆବିଷ୍କାର କରିଛନ୍ତି । ପତ୍ରପତ୍ରିକାରେ ବିଜ୍ଞାନଭିତ୍ତିକ ପ୍ରବନ୍ଧ ରଚନା କରି ଅନ୍ୟମାନଙ୍କର ଦୃଷ୍ଟି ଆକର୍ଷଣ କରିଛନ୍ତି। ସମାଜସେବା ଓ ନେତୃତ୍ୱ ଦେବା କ୍ଷେତ୍ରରେ ପତି ଗିରିଜା ଭୂଷଣଙ୍କର ଯେଉଁ ସ୍ୱତନ୍ତ୍ର ପରିଚୟ ରହିଥିଲା, ସେ ପରିଚୟ ସହ କମଳ କୁମାରୀଙ୍କ ପରିଚୟ ଆଦୌ ସମ୍ପୃକ୍ତ ନଥିଲା। ସ୍ୱକୀୟ ପରିଚୟ ସୃଷ୍ଟି କରି ସେ ଆଗକୁ ବଢ଼ିଥିଲେ। ନିଜର ଏଷଣା ଓ ଧୀଷଣା ହିଁ ଥିଲା ତାଙ୍କ ପରିଚୟ। ଉଦ୍ଭିଦ ବିଜ୍ଞାନର ଛାତ୍ରୀ ଓ ଗବେଷିକା ଭାବେ ଉଦ୍ଭିଦମାନଙ୍କ ବିଶେଷତ୍ୱକୁ ବିଶ୍ଳେଷଣ କରୁଥିଲେ ଏବଂ ଏହାକୁ ନେଇ ଲେଖାମାନ ପ୍ରସ୍ତୁତ କରୁଥିଲେ।

କେତୋଟି ଦିନ ପୂର୍ବରୁ ପ୍ରକାଶ ପାଇଲା 'ବାରି ବଇଦ' ପୁସ୍ତକ। 'ପୌରୁଷ' ପତ୍ରିକାରେ ପ୍ରକାଶ ପାଉଥିବା ଲେଖାରେ ଏକ ସଂକଳନ। ଏହି ଲେଖା ପ୍ରସ୍ତୁତ କରିବା ବେଳେ ଯେଉଁ କେତୋଟି ପୁସ୍ତକର ସହାୟତା ନେବାକୁ ପଡ଼ିଥିଲା ସେଥିମଧ୍ୟରୁ ଗୋଟିଏ ଥିଲା 'ବୃକ୍ଷଲତାର ଔଷଧିଗୁଣ' ପୁସ୍ତକ। କମଳ କୁମରୀ ପଟ୍ଟନାୟକ ଓ କନ୍ୟା ପ୍ରଜ୍ଞା ଏଲିନାର ଭାଲେଣ୍ଟିନା ପ୍ରସ୍ତୁତ କରିଥିଲେ ଏ ପୁସ୍ତକ । ପୂର୍ବରୁ ଦୁଇଟି ଭାଗରେ ପ୍ରକାଶ ପାଇଥିବା ଏହି ପୁସ୍ତକ ପରବର୍ତ୍ତୀ କାଳରେ ଗୋଟିଏ ଖଣ୍ଡରେ 'ବିଦ୍ୟାପୁରୀ' ପ୍ରକାଶନ ସଂସ୍ଥାଦ୍ୱାରା ପ୍ରକାଶ ପାଇଛି । 'ବୃକ୍ଷଲତାର ଔଷଧିଗୁଣ' ସହ 'ଘର ବଇଦ', 'The Secret Life of Plants' ଓ



ଅନ୍ୟ ଅନେକ ପୁସ୍ତକକୁ ପଢ଼ିଲାବେଳେ ଡକ୍ଟର ପଟ୍ଟନାୟକଙ୍କ ଗବେଷଣା ଓ ଅଭିଜ୍ଞତା ପ୍ରସୂତ ଦୃଷ୍ଟିକୋଣ ଯେ କେତେ ଆକର୍ଷଣୀୟ, ତାହା ବୁଝାପଡ଼ିଥିଲା । ଏହି ପୁସ୍ତକର ଉତ୍ସର୍ଗରେ ଯେଉଁ ଆବେଗସିକ୍ତ ଅଭିବ୍ୟକ୍ତି ରହିଛି, ତାହା ବେଶ୍ ପ୍ରଭାବଶାଳୀ । ମାମୁଁ ମହାନ୍ ଜନନାୟକ ବିଜୁ ପଟ୍ଟନାୟକଙ୍କୁ ପୁସ୍ତକଟି ଉତ୍ସର୍ଗ କରି ସେ ଲେଖିଛନ୍ତି-

"ପୂଜନୀୟ ମାମୁଁ

ଶ୍ରୀ ବିଜୁ ପଟ୍ଟନାୟକ

ମୋର ମନେପଡୁଛି - ଲୁହଭିଜା ଆଖି, ଲୁହଭିଜା ମନରେ ।

ବୃକ୍ଷଲତାର ଔଷଧିଗୁଣ ଉପରେ ମୋର ନିବନ୍ଧ ସବୁ ଦେଖି ଆପଣ ମାଇଁଙ୍କୁ କହିଥିଲେ ଯେ ସାହାଯ୍ୟ କରିଥିଲେ କମଳଟା ବେଶ୍ ବଡ଼ ବୈଜ୍ଞାନିକ ହୋଇଥାନ୍ତା, ବିଶେଷତଃ ଦରିଦ୍ର ଓଡ଼ିଶାବାସୀଙ୍କ କଲ୍ୟାଣରେ ଲାଗିପାରିଥାନ୍ତା ତା'ର ଗବେଷଣା । ତା' ହାସହିତ ଖେଦୋକ୍ତି ପ୍ରକାଶ କରି କହିଥିଲେ,

"କିନ୍ତୁ ସମୟ ଅତିକ୍ରାନ୍ତ ହୋଇଯାଇଛି।"

'ମଣିଷ ଓ ଅରଣ୍ୟ' ଉପରେ ନିବନ୍ଧକୁ ଦେଖି କହିଥିଲେ ଏଇଟା ନବୀନକୁ ଦେବି ପଢ଼ିବାକୁ। ସେ ବୃକ୍ଷଲତାକୁ ଭଲ ପାଏ।

ସମୟ ଅତିକ୍ରମ ହୋଇଥିଲା। ଅବସର ନେବାର ବେଳ ଆସିଥିଲା। ବଡ଼ ବୈଜ୍ଞାନିକ ହୋଇପାରିନାହିଁ ।

କିନ୍ତୁ ଆପଣଙ୍କ ସ୍ୱପ୍ନ ?

ବୃକ୍ଷଲତାର ଔଷଧିଗୁଣ ଉପରେ ବହି ଦରିଦ୍ର ଓଡ଼ିଶାବାସୀଙ୍କ କଲ୍ୟାଣରେ ଲାଗିପାରିଲେ ଆପଣଙ୍କ ସ୍ୱପ୍ନ କାଣିଚାଏ ସାର୍ଥକ ହେବ ନାହିଁ ?

ଆପଣ ନାହାନ୍ତି ।

ଆପଣଙ୍କର ଆଶିଷ ନେଇ ମୁଁ ଚାଲିଛି। ମୋର ବି ତ ସମୟ ଆଉ କେତେକାଳ ? ତଥାପି ମୁଁ ଚାଲିଥିବି ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ସେହି ଜନକଲ୍ୟାଣ ଏବଂ ଆପଣଙ୍କ ସ୍ୱପ୍ନକୁ ସାର୍ଥକ କରିବା ପାଇଁ । କାଣିଚାଏ ମାତ୍ର ସାର୍ଥକ ହେଲେ ଜୀବନ ସାର୍ଥକ ହେବ।

ଆପଣଙ୍କର ଆଶିଷର ଅମିୟଧାରା ଝରିପଡୁ ଆମ ଉପରେ ।

ଅନେକବାର ପଢ଼ିଛି ଏହି ଉତ୍ସର୍ଗପତ୍ରକୁ । କେତେ ସହଜ ଓ ସରଳ ଉଚ୍ଚାରଣ । ମନକୁ ଛୁଇଁ ଛୁଇଁ ଯାଇଛି। 'ବୃକ୍ଷଲତାର ଔଷଧିଗୁଣ'ରେ ବିଭିନ୍ନ ବୃକ୍ଷଲତାର ଔଷଧୀୟ ଗୁଣ ନାହିଁ ଅଛି ଏହି ବୃକ୍ଷ ସହିତ ଆମ୍ଭମାନଙ୍କର ସମ୍ପର୍କ।



ଏବେ ବି ମୋ' ଟେବୁଲ ଉପରେ ରହିଛି ଏହି ପୁସ୍ତକ । ଆବଶ୍ୟକ ହେଲେ ଖେଳାଇ ଦିଏ । କିଛି ନୂଆ ତଥ୍ୟ ଅଛି କି ଖୋଜେ । ଯେତେବେଳେ 'ଆମ ଓଡ଼ିଶା' ପ୍ରକାଶନ ସଂସ୍ଥା ପକ୍ଷରୁ 'ବାରି ବଇଦ' ପ୍ରକାଶ ପାଇବାର ନିଷ୍ଠିତ ହେଲା । ଭାବିଲି ମୋ' ନାମ ଦେବି ନାହିଁ । ବିନା ନାମରେ ବା ପୂର୍ବରୁ କିଛି ଲେଖା ଲେଖିଥିବା ଛଦ୍ମନାମଟିରେ ଏହା ଛାପି ଦେବା ଦରକାର । କାରଣ ଏହା ମୋ' ଗବେଷଣା ବା ଅନୁଧ୍ୟାନର କ୍ଷେତ୍ର ନୁହେଁ, ସେଥିପାଇଁ । 'ପୌରୁଷ'ର ସମ୍ପାଦକ ଅସିତ ମହାନ୍ତି ଓ 'ଆମ ଓଡ଼ିଶା'ର ସମ୍ପାଦକ ସ୍ୱରାଜ ମିଶ୍ର କିନ୍ତୁ ମୋ' ନାମରେ ଏହା ଛାପିବା ପାଇଁ କହିଲେ । ନାହିଁ କରିପାରିନଥିଲି । ନିକଟରେ ବି ପ୍ରକାଶ ପାଇଲା ଏ ପୁସ୍ତକଟି । ଏହି ଅବସରରେ ମୋର ସ୍ମୃତିରେ ଡକ୍ଟର କମଳ କୁମାରୀ ପଟ୍ଟନାୟକଙ୍କ ମୁଖମଣ୍ଡଳ । ସେହି ସମ୍ଭ୍ରାନ୍ତପଣ । ଏବେ ସେ ଅବର୍ତ୍ତମାନରେ । ଅନେକଙ୍କ ସ୍ମୃତିରେ ସେ ସଦା ସ୍ମରଣୀୟ ହୋଇ ରହିବେ । ତାଙ୍କୁ ପ୍ରଣାମ କରୁଛ ।

◆◆◆



# ପ୍ରେରଣାଦାୟିନୀଙ୍କୁ ହରାଇଲି

ଡଃ ସତ୍ୟ ରାୟ

ଗିରିଜାଭୂଷଣ ପଟ୍ଟନାୟକ ଓ ମା'ଙ୍କର ସହଧର୍ମିଣୀ ପ୍ରଫେସର ଡକ୍ଟର କମଳ କୁମାରୀ ପଟ୍ଟନାୟକ ଉଭୟ ଥିଲେ ମୋର ପରମ ହିତାକାଂକ୍ଷୀ । ବ୍ୟକ୍ତିଗତ ତଥା ବୃତ୍ତିଗତ ଜୀବନରେ ସେମାନଙ୍କଠାରୁ ମୁଁ ଅନେକ ପ୍ରେରଣା ଓ ପରାମର୍ଶ ଲାଭ କରି ନିଜକୁ ଧନ୍ୟ ମନେ କରୁଥିଲି । ଏଥିପାଇଁ ମୁଁ ଉଭୟଙ୍କ ନିକଟରେ ଚିରଋଣୀ । ୪ ବର୍ଷ ତଳେ ଗିରିଜା ବାବୁଙ୍କୁ ହରାଇଥିଲି । ଏବେ କମଳ ଅପାଙ୍କୁ ଚିରଦିନ ପାଇଁ ହରାଇଲି । ଜଣେ ସମାଜସେବୀ, ସୁ ଲେଖକ ତଥା ଦି'ୟୁନିଭର୍ସର ପ୍ରାଣପ୍ରତିଷ୍ଠାତା ରୂପେ ଗିରିଜା ବାବୁ ଯେପରି ପ୍ରତିଷ୍ଠା ଅର୍ଜନ କରିଥିଲେ କମଳ ଅପା ମଧ୍ୟ ସେହିଭଳି ଜଣେ ଛାତ୍ରବତ୍ସଳା ଅଧ୍ୟାପିକା, ଲୋକପ୍ରିୟ ବିଜ୍ଞାନ ଲେଖିକା ଓ ପରୋପକାରୀ ରୂପେ ବେଶ୍ ଖ୍ୟାତି ଅର୍ଜନ କରିଥିଲେ । ସର୍ବଦା ଚଳଚଞ୍ଚଳ ଥିବା କମଳ ଅପା ଅସୁସ୍ଥ ହେଲା ପରେ ପାଖରେ ରହି ବ୍ୟାପ୍ତି ବାବୁ ଯେପରି ସେବା କରୁଥିଲେ ତାହା ମୋତେ ଅଭିଭୂତ କରିଥିଲା । ଏ ଯୁଗରେ ଯେ ଜଣେ ପୁଅ ମା'ଙ୍କର ଏପରି ନିଷ୍ଠାର ସହ ସେବା ଯତ୍ନ କରିପାରେ ତାହା ମୋତେ ଆଶ୍ଚର୍ଯ୍ୟାନ୍ୱିତ କରୁଥିଲା । ଏ ପ୍ରକାର ସେବାପାଇଁ ବ୍ୟାପ୍ତି ବାବୁଙ୍କ ଉପରେ ମା'ଙ୍କର ଆଶୀର୍ବାଦ ଯେ ଚିରଦିନ ପାଇଁ ଅତୁଟ ରହିବ ଏଥିରେ ସନ୍ଦେହ ନାହିଁ ।

କମଳ ଅପା ଆହ୍ଲାବାଦ ବିଶ୍ୱବିଦ୍ୟାଳୟରେ ଉଦ୍ଭିଦବିଜ୍ଞାନ ଉପରେ ଗବେଷଣା କରି ଯେଉଁ ଜ୍ଞାନ ଆହରଣ କରିଥିଲେ ତାର ନିଷ୍କର୍ଷକୁ ସେ ଶ୍ୱାସରୋଗୀମାନଙ୍କଠାରେ ପ୍ରୟୋଗ କରୁଥିଲେ । ନିଜ ଉଦ୍ୟାନରେ ଉପଲବ୍ଧ ବୃକ୍ଷଲତାରୁ ଔଷଧ ପ୍ରସ୍ତୁତ କରି ଅସହ୍ୟ କଷ୍ଟ ପାଉଥିବା ଶ୍ୱାସରୋଗୀଙ୍କୁ ସେବନ କରିବାକୁ ଦେଉଥିଲେ । ନିୟମିତ  ଔଷଧ ଖାଇ ସହସ୍ରାଧିକ ରୋଗୀ ବିଶେଷ ଉପଶମ ଲାଭ କରୁଥିଲେ । ଏ ପ୍ରକାର ସେବାରୁ ସେ ଆତ୍ମତୃପ୍ତି ଲାଭ କରୁଥିଲେ । ଏଥିପାଇଁ ସେ ରୋଗୀଙ୍କଠାରୁ କୌଣସି ଅର୍ଥ ନେଉନଥିଲେ । ଏ ସମ୍ପର୍କରେ ଲୋକଙ୍କୁ ଅବଗତ କରାଇବା ଲାଗି ସେ ମୋତେ ଯେଉଁ ଲେଖା ଓ ଖବର ଦେଉଥିଲେ ତାହା 'ସମାଜ'ରେ ନିୟମିତ ଭାବେ ପ୍ରକାଶ ପାଉଥିଲା । ତାଙ୍କଦ୍ୱାରା ରଚିତ 'ବୃକ୍ଷଲତାର ଔଷଧୀ ଗୁଣ' ପୁସ୍ତକଟି ଏକ ଅନବଦ୍ୟ ସୃଷ୍ଟି । ଆୟୁର୍ବେଦ ଚିକିତ୍ସକମାନେ ଏଥିରୁ ବହୁ ମୂଲ୍ୟବାନ ତଥ୍ୟ ପାଇ ଚିକିତ୍ସାରେ ତାକୁ ପ୍ରୟୋଗ କରୁଥିଲେ ।

ଗିରିଜା ବାବୁଙ୍କ ଜନ୍ମଦିବସ ଓ 'ୟୁନିଭର୍ସ'ର ବିଭିନ୍ନ କାର୍ଯ୍ୟକ୍ରମରେ ସେ ଅତିଥିମାନଙ୍କୁ ଯେପରି ହସ ହସ ମୁହଁରେ ଚର୍ଚ୍ଚା କରୁଥିଲେ ତାହା ମୁଁ କେବେ ଭୁଲିପାରିବି ନାହିଁ । ବିଭିନ୍ନ ସମୟରେ ସେ ଆମକୁ ଅନେକ ଦିଗଦର୍ଶନ ଓ ପରାମର୍ଶ ଦେଉଥିଲେ । ତାଙ୍କଠାରୁ ଆଉ ସେ ପ୍ରେରଣା ମିଳିବ ନାହିଁ । ତାଙ୍କର ତିରୋଧାନରେ ମୁଁ ମୋର ଜଣେ ପ୍ରେରଣାଦାୟିନୀଙ୍କୁ ଚିରକାଳ ପାଇଁ ହରାଇଲି । ଏଥିପାଇଁ ମୁଁ ମର୍ମାହତ । ତାଙ୍କ ଆତ୍ମାର ସଦ୍‌ଗତି କାମନା କରୁଛି । ସେ ପୁନଃଜନ୍ମ ଲାଭ କରି ଆମକୁ ପୁଣି ପ୍ରେରଣା ଦିଅନ୍ତୁ ଏହା ହିଁ ପରମେଶ୍ୱରଙ୍କ ନିକଟରେ ମୋର ବିନମ୍ର ପ୍ରାର୍ଥନା ।

◆◆◆

# ଅର୍ଦ୍ଧଶତାବ୍ଦୀର ଅନୁଭୂତି

ଡଃ ପାବକ କାନ୍‌ଗୋ

କମଳ ଅପା ଦୀର୍ଘଦିନ ଧରି ଅସୁସ୍ଥ ଥିଲେ । ଅନେକ ସମୟରେ ସେ ମୃତ୍ୟୁସହିତ ସଂଗ୍ରାମ ବି କରୁଥିଲେ । ତେଣୁ ତାଙ୍କ ଦେହାନ୍ତ ମୋ' ମନରେ ବିସ୍ମୟ ସୃଷ୍ଟି କଲା ନାହିଁ । କିନ୍ତୁ ମୋ' ମନ ଆଲୋଡ଼ିତ ହେଲା ଏଇଥିପାଇଁ ଯେ ସେ ଯେଉଁ ସ୍ମୃତି ଛାଡ଼ିଦେଇଗଲେ ଅନେକ ଦିନ ଧରି ତାହା ମୋତେ ଦୁଃଖରେ ଜର୍ଜରିତ କରୁଥିବ । ତାଙ୍କ ଅବର୍ତ୍ତମାନରେ ଯେଉଁ ଶୂନ୍ୟତା ସୃଷ୍ଟି ହେଲା, ଯେଉଁ ଅଭାବ ଅନୁଭୂତ ହେବ ତାହା ବର୍ଣ୍ଣନା କରିବା ସମ୍ଭବ ନୁହେଁ ।

କମଳ ଅପାଙ୍କୁ ମୁଁ ଅତି ନିକଟରୁ ଜାଣିଲି ପ୍ରାୟ ୫୨ ବର୍ଷ ତଳେ । ୧୯୬୭ ଜ୍ଞାନମଣ୍ଡଳ ଅଫିସ ଯେତେବେଳେ ବାରବାଟୀ ଷ୍ଟାଡ଼ିୟମ୍‌କୁ ଆସି ପ୍ରାୟ ପ୍ରତିଦିନ ଗିରିଜା ବାବୁ ଆମ ଅଫିସକୁ ଆସୁଥିଲେ । ତାଙ୍କ ଘରୁ ଇସକସ୍ ଅଫିସକୁ ଯିବାକୁ ହେଲେ ଆମ ଅଫିସ ଦେଇ ଯିବାକୁ ପଡ଼େ । ସେତିକିବେଳେ ବାପାଙ୍କଠାରୁ ଶୁଣିଲି ତାଙ୍କର ଧର୍ମପତ୍ନୀ କମଳ କୁମାରୀ ପଟ୍ଟନାୟକଙ୍କ ସମ୍ପର୍କରେ । ଯେତେବେଳେ ତାଙ୍କୁ ଭେଟିଛି ତାଙ୍କ ପ୍ରତି ସ୍ୱତଃ ସମ୍ମାନ ଆସିଯାଇଛି । ଶିଷ୍ଟତା, ଶାଳୀନତା, ନମ୍ରତାର ସେ ଥିଲେ ମୂର୍ତ୍ତିମନ୍ତ ଦେବୀ । ସଂକ୍ଷିପ୍ତରେ ଥିଲା ତାଙ୍କର ବିଶ୍ୱାସ । ଅତି ଅଳ୍ପ କଥା କହୁଥିଲେ, ଦରକାରଠାରୁ ଅଧିକ କିଛି କହୁନଥିଲେ ଏବଂ ସେହି କହିବା ଭିତରେ କାହାପ୍ରତି କୌଣସି ନକାରାତ୍ମକଭାବ ନଥିଲା । ଯେବେ ଭେଟିଛି, ତାଙ୍କ ସହିତ ଆଲୋଚନା କରିଛି କାହାକୁ ସେ ନିନ୍ଦା ବା ସମାଲୋଚନା କରିବାର ଶୁଣିନାହିଁ । ବିଦ୍ୟା, ବୁଦ୍ଧି, ଯଶ, କୃତିତ୍ୱରେ ସେ କାହାଠାରୁ ଊଣା ନଥିଲେ ମଧ୍ୟ ଜଣେ ସାଧାରଣ ମହିଳା ଭାବରେ ପରିଚିତ ହେବାକୁ ସବୁବେଳେ ଆଗ୍ରହୀ ଥିଲେ । ମୋ' ମତରେ ଏହା ହିଁ ଥିଲା ତାଙ୍କ ବ୍ୟକ୍ତିତ୍ୱର ସବୁଠୁ ଗୁରୁତ୍ୱପୂର୍ଣ୍ଣ ଦିଗ । ଶିକ୍ଷାଦାନ ଓ ଗବେଷଣା କ୍ଷେତ୍ରରେ ଚରମ ସାଫଲ୍ୟ ଲାଭ କରିଥିଲେ । ଶହ ଶହ ଛାତ୍ରଛାତ୍ରୀଙ୍କୁ 'ମଣିଷ କରିଥିଲେ' ଏବଂ କିଛିକାଳ ପ୍ରଶାସନିକ ଦାୟିତ୍ୱ ତୁଲାଇଥିଲେ । ସବୁ କାର୍ଯ୍ୟ ଭିତରେ କିନ୍ତୁ ସେ କେବେହେଲେ ନିଜ ଉପରୁ ନିୟନ୍ତ୍ରଣ ହରାଇ ନଥିଲେ, କ୍ରୋଧ ବା ଦ୍ୱେଷର ବଶବର୍ତ୍ତୀ ହୋଇନଥିଲେ ।

ଗିରିଜା ବାବୁ ମୋତେ ଅନେକ ଥର କହିଛନ୍ତି - ତୁ ମୋତେ ତ ଗିରିଜା ବାବୁ ବୋଲି କହୁଛୁ - କମଳଙ୍କୁ କାହିଁକି ଅପା କହୁଛୁ । ଏହାର କୌଣସି ଉତ୍ତର ଦେଇ ନଥିଲେ ମଧ୍ୟ ତାହାରି ଭିତରେ କମଳ ଅପାଙ୍କ କୋମଳ ବ୍ୟକ୍ତିତ୍ୱର ଝଲକ । ତାଙ୍କ ସ୍ମୃତି ପ୍ରତି ବିନମ୍ର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ।

◆◆◆

# ସ୍ମୃତିରେ 'କମଳ କୁମାରୀ'

ପ୍ରିୟବତୀ ଦାସ (ମହାନ୍ତି)

ସଂସାର ଅଙ୍ଗନେ ଢାଙ୍କିଦେଇ ତମ
ଶୂନ୍ୟତାର କଳାଛାଇ;
ଚାଲିଗଲ ଅପା ଅଫେରା ରାଇଜେ
କେଉଁ ଅଭିମାନ ପାଇଁ ?
ଆସିବା ଯିବା ତ ଭବେ ଚାଲେ ନିତି
ନାହିଁ କିଛି ନୂତନତା;
ତଥାପି କାହିଁକି ତମେ ଗଲାପରେ
ଛାଡ଼ି ଚଳେ ଗୁରୁବ୍ୟଥା ॥
ପିଲାଙ୍କ ଆଖିରେ ଲୋକତକର ବନ୍ୟା
ସରିଗଲା ମା' ଡାକ;
ସେନେହ ପଣତେ ପୋଛିଦେବ କିଏ
ଶୁଖି ଯାଇଥିଲେ ମୁଖ ?
ଭବ ସରୋବରେ ତମେ ଗୋ କମଳ
ବିତରିଛ ମଧୁବାସ;
କର୍ମକ୍ଷେତ୍ରେ ଅବା ପରିବାରେ ତମ
ଚିର ଅମଳିନ ଯଶ ॥
ସୁଜାୟା, ସୁମାତା ସୁଲେଖିକା ତମେ
ବିଜ୍ଞାନର ପୂଜାରିଣୀ;
ବିତରିଛ ଜ୍ଞାନ ଜୀବନକୁ ତମ
ସାଧନାର ପୀଠ ମଣି ॥
ତ୍ୟାଗ-ସାଧନାରେ ଗଢ଼ିଲ ସଂସାର
ରମ୍ୟ ନନ୍ଦିଘୋଷ ରଥ;
କୁସୁମିତ କଲ ଆପଣା ସୁକୃତେ
ପିଲାଙ୍କର ଚଲାପଥ ॥
ତମେ ଗୋ କଲ୍ୟାଣୀ ସର୍ବଗୁଣେ ପୂର୍ଣ୍ଣା
କୋଟିରେ ଗୋଟିଏ ଭବେ;
ପାଉଥିଲ ପୂଜା ସଂସାର ଅଙ୍ଗନେ
ପବିତ୍ର ତୁଳସୀ ଭାବେ ॥
ଆତ୍ମା ତବ ଲଭୁ ଗଭୀର ପ୍ରଶାନ୍ତି
ବିଭୁଙ୍କ ସାନିଧ୍ୟ ପାଇ;
ସବୁରି ଉପରେ ରହିଥାଉ ତବ
ସେନେହ ପଣତ ଛାଇ ॥

◆◆◆

# ମାଆଙ୍କ ଆଶୀର୍ବାଦ

**ସୁଜଲ୍ କୁମାର ମହାରଣା**

ମାଆ ! ସମଗ୍ର ବିଶ୍ୱର ଶ୍ରେଷ୍ଠ ଓ ମଧୁର ଶବ୍ଦ। ଏଇ ଶବ୍ଦର ବିକଳ୍ପ ନାହିଁ, ମା' ଚିରକଲ୍ୟାଣକାରୀ। ଯିଏ ସ୍ନେହ ମମତାର ମୂର୍ତ୍ତିମନ୍ତ ପ୍ରତୀକ, ଯାହାର ପଣତଛାଇ ବିପଦପୂର୍ଣ୍ଣ ଦୁନିଆରେ ସନ୍ତାନର ରକ୍ଷା କବଚ, ସେଇ ମାଆର ଆସନ ସ୍ୱର୍ଗଠାରୁ ବି ଉଚ୍ଚରେ। ମା' ଭିତରେ ପୁରି ରହିଥାଏ ସାରା ବିଶ୍ୱବ୍ରହ୍ମାଣ୍ଡ। ସେ ତ ଏ ସୁନ୍ଦର ସୃଷ୍ଟିର ସ୍ରଷ୍ଟା।

ଆଜି ଏଭଳି ଜଣେ ବିଶ୍ୱବନ୍ଦନୀୟ ମା'ଙ୍କ ସମ୍ବନ୍ଧରେ ଲେଖିବାକୁ ପ୍ରୟାସ କରିଛି, ସେ ହେଉଛନ୍ତି ମୋର ଗୁରୁ ପ୍ରଫେସର ଡଃ କମଳ କୁମାରୀ ପଟ୍ଟନାୟକ। ମୁଁ ବ୍ୟକ୍ତିଗତ ଭାବେ ୧୯୮୮-୧୯୯୦ ପର୍ଯ୍ୟନ୍ତ ରେଭେନ୍ସା ମହାବିଦ୍ୟାଳୟ (ବର୍ତ୍ତମାନ ବିଶ୍ୱବିଦ୍ୟାଳୟ)ର ଉଦ୍ଭିଦବିଜ୍ଞାନ ବିଭାଗରେ ସ୍ନାତକୋତ୍ତର ଡିଗ୍ରୀ କରିବାବେଳେ ଏଇ ମହନୀୟ ମା'ଙ୍କ ସଂସ୍ପର୍ଶରେ ଆସିଥିଲି। ପ୍ରତ୍ୟକ୍ଷ ଛାତ୍ରଭାବେ ଶିକ୍ଷା ଗ୍ରହଣ କରିବା ସହିତ ପ୍ରତ୍ୟେକ ସମୟରେ ମା'ର ସ୍ନେହ, ଶ୍ରଦ୍ଧା, ଭଲପାଇବା ମଧ୍ୟ ଅନୁଭବ କରିଛି।

ସେ ଥିଲେ ପ୍ରେରଣାର ଉତ୍ସ। ଅଧ୍ୟବସାୟରେ ମନୋନିବେଶ କରି ସଫଳତା ପାଇବାକୁ ପରାମର୍ଶ ଦେଉଥିଲେ । ସମସ୍ତଙ୍କୁ 'ମୋ' ପିଲା' ବୋଲି କହୁଥିଲେ। ଉଦ୍ଭିଦବିଜ୍ଞାନ ବିଭାଗକୁ ଶ୍ରେଷ୍ଠ ବିଭାଗରେ ପରିଣତ କରିବା ତାଙ୍କର ଲକ୍ଷ୍ୟ ଓ ଉଦ୍ଦେଶ୍ୟ ଥିଲା। ଏକଦା ଶ୍ରେଣୀକକ୍ଷରେ ପରାମର୍ଶ ଦେଇ କହିଥିଲେ - "ଅତୀତରେ କ'ଣ ହେଇଛି ଭୁଲିଯାଅ, ଭବିଷ୍ୟତ କିପରି ଭଲ ହେବ ବର୍ତ୍ତମାନଠାରୁ ଯତ୍ନବାନ ହୁଅ ।"

ଏଇ ମହନୀୟ ମା'ଙ୍କ ପ୍ରତ୍ୟକ୍ଷ ପରାମର୍ଶରେ ଏବଂ ତତ୍ତ୍ୱାବଧାନରେ BARCର ଅୟମାରମ୍ଭ ହୁଏ, ଯାହା ଆଜିପର୍ଯ୍ୟନ୍ତ ପ୍ରତ୍ୟେକ ବର୍ଷ ଅନୁଷ୍ଠିତ ହୋଇଆସୁଛି ଉଦ୍ଭିଦବିଜ୍ଞାନ ବିଭାଗରେ । ତାଙ୍କର ପିଲାମାନଙ୍କର ସବୁପ୍ରକାର ଉନ୍ନତି ପାଇଁ ସେ ଯତ୍ନବାନ ଥିଲେ । ପାଠପଢ଼ା ସହିତ ପିକ୍‌ନିକ୍, study tour ଯିବା ଉପରେ ମଧ୍ୟ ସେ ଗୁରୁତ୍ୱାରୋପ କରୁଥିଲେ । ତାଙ୍କର ପ୍ରଚେଷ୍ଟାରେ ଆମେ ଶିମିଳିପାଳ ଓ ଭିତର କନିକା ଭ୍ରମଣ କରିବାର ସୁଯୋଗ ପାଇଥିଲୁ । ଜୈବିବିବିଧତାର ପ୍ରତ୍ୟକ୍ଷ ଅନୁଭୂତ ବର୍ତ୍ତମାନ ଆମର କର୍ମମୟ ଜୀବନରେ ବହୁ ସହାୟକ ହେଉଛି ।

ପରମପୂଜ୍ୟା ମହୀୟସୀ ମା' ପ୍ରଫେସର ଡଃ କମଳ କୁମାରୀ ପଟ୍ଟନାୟକ ଗତ ତା ୧୭.୧୨.୨୦୧୯ ରିଖ ମଙ୍ଗଳବାର ଦିନ ଇହଲୀଳା ସମ୍ବରଣ କରିଛନ୍ତି । ଏହା ମୋ' ପାଇଁ କେବଳ ନୁହେଁ ଉଦ୍ଭିଦବିଜ୍ଞାନ ସହିତ ସମ୍ପୃକ୍ତ ସମସ୍ତ ବ୍ୟକ୍ତିବିଶେଷଙ୍କ ପାଇଁ ଏକ ଦାରୁଣ ଦୁଃଖଦ ସମ୍ବାଦ । ତାଙ୍କର ଶୂନ୍ୟସ୍ଥାନ ପୂରଣ ଅସମ୍ଭବ । ମାଆଙ୍କ ଆତ୍ମା ପରମାତ୍ମାଙ୍କ ପାଖେ ଲୀନ ହେଉ, ଏହା ହିଁ ପ୍ରାର୍ଥନା । ଅଦୃଶ୍ୟ ଭାବେ ତାଙ୍କର ଆଶୀର୍ବାଦ ସର୍ବଦା ଆମ୍ଭମାନଙ୍କ ଉପରେ ରହିବ, ଏଥିରେ ସନ୍ଦେହ ନାହିଁ ।

◆◆◆

# IN LOVING MEMORY

Pradip Kumar Das

While working in the Income Tax depatment at Cuttack I stayed in a state government quarter in the KVK road and was privilegded to know Shri Girija Bhushan Pattnaik and Dr Kamal Kumari Pattnaik.My house was opposite their house and from the beginning of my stay there,I was quite close to the family.I was accepted as a son and as priviledged to their affection and guidance.

Dr Kamal Kumari Pattnaik was a motherly figure for me and my wife.She was a picture of dignity,decency and affection.Occasionally during her short walks in the colony she stopped at our house and talked to my wife on many matters including personal.In fact my wife was the most shocked to learn about her demise.She was a contemporary of my eldest sister in Ravenshaw College .I used to ask her questions about the Ravenshaw College of her time and the legendary personalities that she had interacted with

Even after my transfer out of Odisha,we met them as often as possible when we visited Cuttack.We always fondly remembered her quiet and dignified presence and the affection bestowed on us.

When she has made her last journey,we bid her farewell ,pay our profound regards and pray for her eternal bliss.

◆◆◆



# IN HEAVEN YOU BLOOM TOO.... OUR BELOVED KAMAL MAUSI

**Dr Lipika Baliarsing**

Lotus in real sense, pure hearted, noble and blessed with worthy and devoted children , Pranjya Valentina, Abhijeet, Byapti Albert,

Bestowed with ever joyous kind, philanthropist Girija mausa, her counterpart, She was the empress of vanaspati kingdom with her green thumb and heart, Passionate for plants for 7 decades, in this age the greatest botanist, Addendum, Aster, Begonia, Calendula, cosmos, chrysanthemum, dianthus were her floral connect, Hibiscus, ixoras, pentas, tukai, zinnias, cacti, gerbera, gladioli, fuchsia, euphorbia gave her comfort, Captivating, charming ,unconditionally loving and giving , these plants always occupied her precinct,

Pink, white, yellow, red, purple, blooms with green leaves were always abundant and around her so vibrant, for they were her children nurtured with precision, care, dedication and enjoyment.

Compassion was her very nature, treating great numbers of suffering asthma patient, with her magic leaves, unique gift of nature to mankind picked up by her intellect, so much concern, love, radiating from her soul everyone felt, she retracted to her own world after mausa left.

All the devotion, care of her children must have wrapped up around her heart, now when she is liberated from her suffering she is blissful in her heavenly abode next to God, eternal rest. There she takes with her the soil of earth with fragile blooms making them immortal up above the sky and keeps on showering them on all her kith and kin ,now that her soul has a fresh start.

Grief no more Pranjya, to you all she will always make her presence felt, not through bereavement, through the breeze gently soothing the melancholic trees and plant, the shining Sun's promise to shower himself each and every day his light, and as lotus radiates dynamism, beauty, tranquillity, happiness in this mortal place we visit for our stay transient, May her soul rest in peace.

In condolence and remembrance.

◆◆◆

# ନିଆରା ଦଂପତି

ଦୀପକ କାନୁନ୍‌ଗୋ

ଗିରିଜା ଭୂଷଣ ପଟ୍ଟନାୟକ।

କମଳ କୁମାରୀ ପଟ୍ଟନାୟକ।

ନିଆରା ଦଂପତି... ନିଆରା ଦାଂପତ୍ୟ।

କମଳ ଅପାଙ୍କ ବିଷୟରେ ଆଲୋଚନା କରିବାକୁ ହେଲେ ମତେ ଫେରିଯିବାକୁ ପଡ଼ିବ ୧୯୬୦ ଦଶକର ମଧ୍ୟଭାଗକୁ। ପରିଣତ ବୟସରେ ଯେଉଁମାନେ କମଳ ଅପାଙ୍କୁ ଦେଖିଛନ୍ତି, ସେମାନଙ୍କ ପାଖରେ ତାଙ୍କ ପରିଚୟ ହୁଏତ ଜଣେ କୁଶଳୀ ଉଦ୍‌ଭିଦ ବିଦ୍ୟାର ପ୍ରଫେସର ଭାବରେ; ଓଡ଼ିଶା ପବ୍ଲିକ ସର୍ଭିସ କମିଶନର ସଭ୍ୟା ଭାବରେ; ଶ୍ୱାସ ରୋଗୀଙ୍କ ପାଇଁ ଆଶାର ଆଲୋକ ବର୍ତ୍ତିକା ଭାବରେ କିମ୍ବା ସମକାଳୀନ ନାରୀ ସମାଜର ଜଣେ ଅଗ୍ରଣୀ ଦୂତ ଭାବରେ। ଆଉ କେହି କେହି ହୁଏତ ତାଙ୍କୁ ଜାଣିଛନ୍ତି ନିଜ ସୁପ୍ରସିଦ୍ଧ ସ୍ୱାମୀ ଗିରିଜା ଭୂଷଣ ପଟ୍ଟନାୟକଙ୍କ ହାତଗଢ଼ା ଅନୁଷ୍ଠାନ 'ୟୁନିଭର୍ସ'ର ଚଳଚଞ୍ଚଳ କର୍ମିଣୀ ଭାବରେ। ଯେଉଁମାନେ ଆହୁରି ପରେ ତାଙ୍କ ଜୀବନରେ ଆସିଛନ୍ତି, ସେମାନଙ୍କ ପାଖରେ କମଳ ଅପା ହେଉଛନ୍ତି ପ୍ରଜ୍ଞା, ଅଭିଜିତ କିମ୍ବା ବ୍ୟାପ୍ତିଙ୍କ ମାଆ।

୧୯୬୦ ଦଶକ ମଧ୍ୟଭାଗରେ କଟକ ନିମଚୌଡ଼ିର ଭାଷାକୋଷ ଲେନର ବଳେଇ ପାଲିତଙ୍କ କଚେରୀ ଘରେ ଥିବା ଜ୍ଞାନମଣ୍ଡଳ ଅଫିସ ଉଠିଆସିଲା ବାରବାଟୀ ଷ୍ଟାଡିଅମର ସେତେବେଳର ଚାରି ନମ୍ବର ଗାଲେରୀର ୧୨ ନମ୍ବର ଘରକୁ। ଷ୍ଟାଡିଅମର ପ୍ରାଣପ୍ରତିଷ୍ଠାତା ଭୈରବ ଚନ୍ଦ୍ର ମହାନ୍ତିଙ୍କ ଅନୁରୋଧରେ ତାଙ୍କ ବନ୍ଧୁ ବିନୋଦ ଷ୍ଟାଡିଅମ ଆସିଯାଇଥିଲେ। ସେତିକିବେଳେ ସେହି ଗାଲେରୀର ଦୁଇ ନମ୍ବର ଘରେ ଥାଏ 'ଇସ୍‌କସ୍' ଅଫିସ। ଇସ୍‌କସ୍‌ର ସର୍ବମୟ କର୍ତ୍ତା ଥା'ନ୍ତି ସେତେବେଳେ ଗିରିଜା ବାବୁ। ତାଙ୍କ ସାଙ୍ଗଠନିକ ଦକ୍ଷତାର ଉପଯୋଗକରି ସେ ଇସ୍‌କସ୍‌କୁ କରିଦେଇଥା'ନ୍ତି ଓଡ଼ିଶାର ସାଂସ୍କୃତିକ ତଥା ସାମାଜିକ ଜୀବନର ଅନ୍ୟତମ ପ୍ରାଣକେନ୍ଦ୍ର। ସେତିକିବେଳେ ଆମ ଭାଇ-ଭଉଣୀଙ୍କ ପରିଚୟ ହୋଇଥିଲା ଗିରିଜା ବାବୁ ଓ କମଳ ଅପାଙ୍କ ସହିତ। ମୁଁ ସେତେବେଳେ ପ୍ୟାରୀ ମୋହନ ଏକାଡେମୀର ଅଷ୍ଟମ-ନବମ ଶ୍ରେଣୀର ଛାତ୍ର। ଜ୍ଞାନମଣ୍ଡଳ ଅଫିସକୁ ଯେଉଁ ଦୁଇଜଣ ପ୍ରତ୍ୟେକ ଦିନ ନିଶ୍ଚୟ ଆସୁଥିଲେ, ସେହି ଦୁଇଜଣ ହେଲେ ଭୈରବ ବାବୁ ଓ ଗିରିଜା ବାବୁ। ଇସ୍‌କସ୍‌କୁ ତତ୍କାଳୀନ ସୋଭିଏତ ରୁଷର ବହୁ ବିଜ୍ଞ ବ୍ୟକ୍ତି ସେତେବେଳେ ଆସୁଥା'ନ୍ତି। ଗିରିଜା ବାବୁଙ୍କର ପ୍ରଥମ କାମ ଥାଏ, ସେମାନଙ୍କୁ ଜ୍ଞାନମଣ୍ଡଳ ଅଫିସକୁ ଆଣି ବିନୋଦ କାନୁନ୍‌ଗୋଙ୍କ ତଥ୍ୟ କେନ୍ଦ୍ରକୁ ଦେଖାଇବା। ବହୁ ସମୟରେ ଏମାନେ ଆସିଲାବେଳେ କମଳ ଅପା ମଧ୍ୟ ଉପସ୍ଥିତ ଥା'ନ୍ତି। ଆମମାନଙ୍କ ମନରେ ତାଙ୍କ ବ୍ୟକ୍ତିତ୍ୱର ସେହି ଯେଉଁ ଛାପ ରହିଛି, ତାହା ଆଜି ମଧ୍ୟ ସତେଜ। ସିଏଯେ ଅଳ୍ପ କେତେଦିନ ତଳେ ଆମ ସମସ୍ତଙ୍କୁ ଛାଡ଼ି ଚାଲିଯାଇଛନ୍ତି ଗିରିଜା ବାବୁଙ୍କ ସହିତ ପୁଣି ଥରେ ଦାଂପତ୍ୟ ଜୀବନ କଟାଇବାପାଇଁ,

ସେକଥା ସହଜରେ ବିଶ୍ୱାସ ମଧ୍ୟ କରିହେଉନାହିଁ ! ନିଜ ଯୁଗର ଏହି ଶ୍ରେଷ୍ଠ ଦଂପତି ଆଜି ଯେଉଁଠି ନା ଥା'ନ୍ତୁ କାହିଁକି, ସେମାନଙ୍କୁ ମୋ'ର ଭୂମିଷ୍ଠ ପ୍ରଣାମ।

ଉଭୟ ଗିରିଜା ବାବୁ ଓ କମଳ ଅପା ଥିଲେ ମୋ'ର ପୂଜ୍ୟ ପିତା ବିନୋଦ କାନୁନ୍‌ଗୋଙ୍କ ଏକାନ୍ତ ଅନ୍ତରଙ୍ଗ। ସେ ତିନିଜଣଯାକ ସତେ ଯେପରିକି ନିଜର ପରିପୂରକ ଭାବରେ ଜନ୍ମ ନେଇଥିଲେ। 'ଜ୍ଞାନମଣ୍ଡଳ' ପ୍ରଣୟନବେଳେ ଯେତେବେଳେ ଉଦ୍‌ଭିଦ ବିଜ୍ଞାନ କିମ୍ବା ଜୀବନ ବିଜ୍ଞାନ ବିଷୟରେ ବିନୋଦ ବାବୁଙ୍କ ମନରେ ସଂଶୟ ଜାତ ହୋଇଛି, ସେତେବେଳେ କମଳ ଅପାଙ୍କ ପାଖକୁ ପ୍ରଥମ ଫୋନ୍ ଯାଏ ନିଜ ମନର ସେହି ସଂଶୟକୁ ଦୂର କରିବାପାଇଁ। ବୋଧହୁଏ ଏଭଳି ଅଭିକ୍ରିୟା ପରେ କମଳ ଅପାଙ୍କୁ ପ୍ରେରଣା ଯୋଗାଇଥିଲା ନିଜକୁ ଜଣେ ସୁଲେଖିକା ଭାବରେ ଗଢ଼ିତୋଳିବା ପାଇଁ। ଜ୍ଞାନମଣ୍ଡଳ ଅଫିସରେ ବସି କମଳ ଅପା ନିଜ ଜ୍ଞାନକ୍ଷୁଧା ମେଣ୍ଟାଇବା ପାଇଁ ଏନ୍‌ସାଇକ୍ଲୋପିଡିଆ ବ୍ରିଟାନିକାକୁ ଘଣ୍ଟା ଘଣ୍ଟା ଧରି ଘାଣ୍ଟୁଥିବା ଦୃଶ୍ୟ ଯେଉଁମାନେ ଦେଖିଛନ୍ତି, ସେମାନଙ୍କ ପାଇଁ ତାହା ହେଉଛି ଅପାସୋରା। ବିନୋଦ ବାବୁଙ୍କ ମୃତ୍ୟୁ ପର୍ଯ୍ୟନ୍ତ ଏହା ଥିଲା କମଳ ଅପାଙ୍କ ନିୟମିତ କାର୍ଯ୍ୟକ୍ରମ ଭିତରୁ ଅନ୍ୟତମ।

ସେ ଥିଲେ ଜଣେ ସ୍ନେହୀ ମଣିଷ—ଗିରିଜା ବାବୁଙ୍କ ତୁଳନାରେ କିଛି କମ୍ ନୁହେଁ। ବଡ଼ କଥାହେଲା, ଛାତ୍ର ଜୀବନରେ ଏ ଦୁଇଜଣଙ୍କ କ୍ଷେତ୍ରରେ ପ୍ରସିଦ୍ଧିର ଯେଉଁ ଭିତ୍ତିପ୍ରସ୍ତର ସ୍ଥାପିତ ହୋଇଥିଲା, ପରବର୍ତ୍ତୀ ଜୀବନରେ ସେମାନେ ତାହାକୁ ବଜାୟ ରଖିପାରିଥିଲେ। ଘଟଣାଚକ୍ରରେ ଗିରିଜା ବାବୁଙ୍କୁ ୧୯୭୦ ଦଶକର ମଧ୍ୟଭାଗରେ ୟୁନିଭର୍ସ ଗଢ଼ିବାକୁ ପଡ଼ିଲା। ସେତେବେଳେ ମଧ୍ୟ, ନିଜର ସମସ୍ତ ବ୍ୟସ୍ତତା ସତ୍ତ୍ୱେ ନିଜ ସ୍ୱାମୀଙ୍କ ବିରାଟ ସ୍ୱପ୍ନ କିଭଳି ସାକାର ହେବ, ସେଥିପାଇଁ କମଳ ଅପା ନିଜକୁ ସଂପୂର୍ଣ୍ଣ ନିବେଦିତ କରିଦେଇଥିଲେ। ତାଙ୍କ କଳାବିକାଶ କେନ୍ଦ୍ରସ୍ଥିତ ସରକାରୀ ଘରଟି ଥିଲା ସେଯୁଗର କଟକର ଅନ୍ୟତମ ଜଣାଶୁଣା ଠିକଣା। ଆମେସବୁ କେତେଥର ଯେ ସେଠାକୁଯାଇ କମଳ ଅପାଙ୍କ ହାତରୁ ଖାଇ ଫେରିଛୁ, ତାହାର ହିସାବ ନାହିଁ। ଦିନଥିଲା, ଯେତେବେଳେ ଓଡ଼ିଶାର ଯିଏ ଯେଉଁଠୁ କଟକ ଆସିଲା, ସିଏ ଚାଲିଯାଉଥିଲା ଗିରିଜା ବାବୁ ଓ କମଳ ଅପାଙ୍କୁ ନିଶ୍ଚୟ ଦେଖା କରିବାପାଇଁ। ଏ ଦୁଇଜଣ ଥିଲେ ଉଭୟ ପ୍ରସିଦ୍ଧି ଓ ପ୍ରତିପତ୍ତିର ଅନ୍ୟନାମ। ଆଜି କମଳ ଅପା ନାହାଁନ୍ତି ସତ—କିନ୍ତୁ ମୋ ଭଳି ଯେଉଁ ଅକିଞ୍ଚନମାନେ ଅତି ଅଳ୍ପ ବୟସରୁ ତାଙ୍କ ସାହଚର୍ଯ୍ୟ ଲାଭ କରିବାର ସୁଯୋଗ ପାଇଛୁ, ସେମାନଙ୍କ ମାନସପଟରେ ତାଙ୍କ ସ୍ମୃତି ହେଉଛି ଚିର ସବୁଜ, ଚିର ଅମ୍ଳାନ। ପ୍ରକୃତିରେ ମୃତ୍ୟୁ ହେଉଛି ଚିରନ୍ତନ ସତ୍ୟ। କିନ୍ତୁ ଜଣଜଣଙ୍କ ମୃତ୍ୟୁକୁ ସହଜରେ ଗ୍ରହଣ କରିହୁଏନାହିଁ। କମଳ ଅପା ହେଉଛନ୍ତି ଏହି ବର୍ଗର। ଆଜିର ଏହି ଦୁର୍ଦ୍ଦିନରେ ପ୍ରକୃତି ତାଙ୍କ ଦାୟାଦ ମାନଙ୍କୁ ଧୈର୍ଯ୍ୟ, ଦୃଢ଼ତା ଓ ବିଚାର-ବୁଦ୍ଧିରେ ନିଷ୍ଠିତ ମଣ୍ଡିତ କରିବ ବୋଲି ଆଶା।

ପୁଣି ଥରେ ପ୍ରଣାମ କମଳ ଅପା... ପ୍ରଣାମ ଗିରିଜା ବାବୁ।

•••



# KAMAL DIDI

**Manju Mohanty**

Kamal didi was a loving and affectionate elder sister to all of us. She visited us regularly when we were children. She came to take advice from my father (Late Dr. George Patnaik) whom she respected very much. We looked forward to her visits as she would always bring some small gifts for all of us. She brought a lot of joy and happiness to my parents as she lived upto their esteem.

Her life was a struggle throughout but she never gave up on her goal. She returned from Allahabad with flying colours, achieving a Doctorate degree in Botany. We were all proud of her. She was Dr. Kamal Kumari Patnaik. She was an embodiment of patience, compassion and tolerance. She was a loving wife, sister, sister-in-law, mother and grandmother. Her journey has been an epitome of selflessness and sacrifice that make us fiercely proud.

May God bless her with eternal peace and happiness, and keep her connected with us in every moment.

◆◆◆

# ଚିନ୍ତର ବନ୍ଦନୀୟା ଡ. କୁମଳ କୁମାରୀ ପଟ୍ଟନାୟକ

**Dr. Rebati Kanta Mishra**

୨୦୧୯ ଡିସେମ୍ବର ୧୮ ତାରିଖ ଅପରାହ୍ନରେ ଅଫିସରେ ଥିବାବେଳେ ମୋ' ଭାଇ ଓ ଭଉଣୀମାନେ ଖବରକାଗଜରୁ ପଢ଼ି ମୋତେ ଫୋନ୍ କରି ଜଣାଇଲେ ଯେ ମୋତେ ଅତି ଭଲ ପାଉଥିବା ମୋ' ଗାଇଡ୍ କମଳ ମାଡ଼ାମ୍ ଗତକାଲି ଅର୍ଥାତ୍ ୧୭.୧୨.୨୦୧୯ ଅପରାହ୍ନରୁ ଆମ ସମସ୍ତଙ୍କଠାରୁ କେଉଁ ଏକ ଅଜଣା ରାଇଜକୁ ଚାଲିଗଲେଣି । ହତବାକ୍ ହୋଇଗଲି ଓ ଅଫିସ୍ କାର୍ଯ୍ୟ ସମ୍ପାଦନ କରିବାର କ୍ଷମତା ହରାଇବସିଲି । ଏହାପୂର୍ବରୁ ବିଗତ ୨ ବର୍ଷ ଧରି ଅସୁସ୍ଥତା ଦୃଷ୍ଟିରୁ ଆଉ ମୋତେ ଚିହ୍ନିପାରୁ ନଥିଲେ କି ପଦେ କଥା ବି କହିପାରୁନଥିଲେ । ସେ ଥିଲେ ମୋ' ଜୀବନ ଯାତ୍ରାରେ ଆଲୋକର ବର୍ତ୍ତିକା ଅର୍ଥାତ୍ ତାଙ୍କରି ଆଶୀର୍ବାଦରୁ ମୁଁ Ph.D ପାଇପାରିଛି ଓ ନିଜ ପରିବାର ଚଳାଇବା ପାଇଁ ସମର୍ଥ ହୋଇପାରିଛି । ତାଙ୍କ ସହିତ ମୋର ନିବିଡ଼ତା ଦୀର୍ଘ ୨୨ ବର୍ଷର । ଡ. କମଳ କୁମାରୀ ପଟ୍ଟନାୟକଙ୍କୁ ମୁଁ ମୋ' 'ମା'ର ସମ୍ମାନ ଦେଇଛି । ତାଙ୍କ ନାମ ଯେପରି, ପ୍ରକୃତି ମଧ୍ୟ ପଦ୍ମଫୁଲପରି । ନିଜର ସ୍ନେହବୋଳା କଥା, ଆତ୍ମୀୟତା, ସରଳତା ତାଙ୍କୁ ସମସ୍ତଙ୍କ ନିକଟରେ ପ୍ରିୟପାତ୍ର କରିଦିଏ । Ravenshaw College Botany Deptt. Head (ବିଭାଗୀୟ ମୁଖ୍ୟ) ହିସାବରେ ଦୀର୍ଘକାଳ ଦାୟିତ୍ୱ ସମ୍ପାଦନ କରି ସବୁ କର୍ମଚାରୀମାନଙ୍କର ପ୍ରିୟଭାଜନ ହୋଇପାରିଥିଲେ । ମୁଁ ତାଙ୍କ ଅଧିନରେ ଗବେଷଣା କରିବା ବେଳେ She was the founder member of BARC ଯାହା ଆଜିପର୍ଯ୍ୟନ୍ତ ବଞ୍ଚି ରହିଛି । M.Phil (Student) ମାନଙ୍କର Dissertation କାମ ମୋ'ଦ୍ୱାରା କରାଇ ମୋତେ ମୋ Thesis ଲେଖିବାର ଶୈଳୀ ଶିଖାଇଦେବାଦ୍ୱାରା ପରବର୍ତ୍ତୀ ସମୟରେ ଏହା ମୋତେ ବହୁତ ସାହାଯ୍ୟ କରିଥିଲା । ଓଡ଼ିଶାର ବରପୁତ୍ର ତଥା ପୂର୍ବତନ ମୁଖ୍ୟମନ୍ତ୍ରୀ ସ୍ୱର୍ଗତ ବିଜୁ ପଟ୍ଟନାୟକଙ୍କ ଭାଣିଜୀ ହେଲେ ବି କିଛି ଅହଙ୍କାର ନଥିଲା । ତାଙ୍କ ବାସଭବନରେ ବହୁବାର ମୋତେ ତାଙ୍କ ହାତରେ ଖାଦ୍ୟ ପରିଷି ଦେଇଛନ୍ତି ଖାଇବା ପାଇଁ ଯେଉଁଥିରେ ପୂରା ଆତ୍ମୀୟତା ଭରିଥାଏ । ନିଜ ସ୍ୱାମୀ ସ୍ୱର୍ଗତ ଶ୍ରୀଯୁକ୍ତ ଗିରିଜାଭୂଷଣ ପଟ୍ଟନାୟକଙ୍କ ଚଳାପଥର ସେ ଥିଲେ ଉପଯୁକ୍ତ Caretaker, ଯେପରି ତାଙ୍କ ଖାଇବା, ଚଳିବାରେ କିଛି ବି ଅସୁବିଧା ନହେବ ସେଥିପାଇଁ ସେବାକାରୀମାନଙ୍କୁ ଉପଯୁକ୍ତ ନିର୍ଦ୍ଦେଶ ଥାଏ । ବେଳେବେଳେ Sir (ଗିରିଜା ବାବୁ) କୌଣସି କାରଣବଶତଃ ପାଟିତୁଣ୍ଡ କଲେ ସେ ପୂରା ଚୁପ୍ ରହନ୍ତି ଓ ତାଙ୍କ ଅସୁସ୍ଥତା ସମୟରେ ରାତିରେ ତାଙ୍କ Chair ପାଖରେ ବସି ହନୁମାନ ଚାଳିଶା ପାଠ କରୁଥିବାର ଲକ୍ଷ୍ୟ କରିଛି । ପ୍ରତ୍ୟେକ ବର୍ଷ ନିଜ ସ୍ୱାମୀଙ୍କ ଜନ୍ମଦିନକୁ "The universe Campus"ରେ ଧୁମ୍‌ଧାମରେ ପାଳନ କରାଇ ୨୦୦/୩୦୦ ଲୋକଙ୍କୁ ଖାଦ୍ୟପେୟର ବ୍ୟବସ୍ଥା କରାଉଥିଲେ । ନିଜର କାର୍ଯ୍ୟଦକ୍ଷତା ବଳରେ ଓଡ଼ିଶା ଲୋକସେବା ଆୟୋଗର ସଭ୍ୟା ହିସାବରେ ବର୍ଷ ୪ କାଳ କାର୍ଯ୍ୟ ସମ୍ପାଦନ କରିଥିଲେ । ମୋ' ପ୍ରତି ତାଙ୍କର ଅନାବିଳ ସ୍ନେହର କିଛି ଘଟଣା ଏଠାରେ ଲେଖୁଛି ।



- ତାଙ୍କଭଳି ସ୍ତରର ବ୍ୟକ୍ତିତ୍ୱ ମୋ' ଘରେ ଗୋଟିଏ ପୁରୁଣା ଭଙ୍ଗା Tableରେ ବସି ମଧ୍ୟାହ୍ନ ଭୋଜନ କରିଛନ୍ତି ଓ ମୋ' ଖଟ ଉପରେ ବିଶ୍ରାମ ମଧ୍ୟ କରିଛନ୍ତି ।
- ମୋ' ବିଭାହର ୨/୩ ଦିନ ପୂର୍ବରୁ ତାଙ୍କ ହାତ ସୁନା ମୁଦିକୁ ମୋ' ହାତରେ ପିନ୍ଧାଇ ଦେଇଥିଲେ ଓ ବିଭାହର ବରଯାତ୍ରୀ ଦଳରେ ଓ ବିଭାହର ବେଦୀ ପାଖରେ ୨ ଘଣ୍ଟା ରହିଥିଲେ ।
- ମୋ Ph.D Degree ପାଇବା ଦିନ ସକାଳୁ ତାଙ୍କ ଘରେ ମୋତେ ନୂଆ ଉତ୍ତରୀୟ ପିନ୍ଧାଇ ପରୀକ୍ଷାକୁ ବିଦା କରିଥିଲେ ଓ ଉରଶବ୍ଦରର ପାଇବା ପରେ ।
- ସ୍ନେହରେ ମୋ' ପୁଅର ନାମ ଦେଇଥିଲେ ପାର୍ଥ । Universe Campus ରେ ଦିନେ ବନ୍ଧୁମିଳନ କରାଇଥିଲେ ।
- ତାଙ୍କ ନିକଟରେ ଗବେଷଣା ସମୟରେ ମୋ' ହାତ ଖର୍ଚ୍ଚ ପାଇଁ ଯଥା-Durga Puja, Diwali, Holi, New Year ସମୟରେ ୨୦୦/୩୦୦ ଟଙ୍କା ଦିଅନ୍ତି ଓ କହିବେ ପଇସା ନେ' ଲଡୁ ଓ ଜିଲିପି କିଣି ଖାଇବୁ ।
- ତାଙ୍କ କନ୍ୟା ପ୍ରଜ୍ଞା ଗବୟବଙ୍କଙ୍କ ବିଭାହ ସମୟରେ ୨/୩ ଥର ତାଙ୍କ ନିର୍ଦ୍ଦେଶରେ Universe Campus ରେ ବିଭିନ୍ନ ଦାୟିତ୍ୱରେ ମୋତେ ନିୟୋଜିତ କରିଥିଲେ ।
- ବହୁ ସମୟରେ ସକାଳୁ ତାଙ୍କ ପାଖରେ ପହଞ୍ଚିଲେ ତାଙ୍କ ଠାକୁରଙ୍କ ବିଭୁତି ମୋ' ମଥାରେ ଲଗାଇ ଦିଅନ୍ତି ।

ସେଭଳି ଏକ ଚୀର ବନ୍ଦନୀୟା, ମାତୃସ୍ନେହୀ ବ୍ୟକ୍ତିତ୍ୱଙ୍କୁ ମୁଁ, ମୋ' ପରିବାର ବିଶେଷ କରି Revenshaw college ର ଉଦ୍ଭିଦ ବିଜ୍ଞାନ ବିଭାଗ, BARC Member ମାନଙ୍କ ତରଫରୁ ଅଶ୍ରୁଳ ଶ୍ରଦ୍ଧାଞ୍ଜଳି ଜଣାଉଛି ଯେ ସେଇ ଅଜଣା ରାଇଜରୁ ଆମମାନଙ୍କୁ ସ୍ନେହ, ଆଶୀର୍ବାଦ ଢାଳୁଥାଆନ୍ତୁ । ୧୮ ଡିସେମ୍ବର ୨୦୧୯ ରାତି ୯ଟାରେ ତାଙ୍କ ବାସଭବନରେ ତାଙ୍କ ନିଜ Room କୁ ଚାହିଁଲି ଓ ସେ ଜାଗାର ଅବସ୍ଥା ଦେଖି ନିଜର କୋହ ସମ୍ଭରଣ କରିପାରିନଥିଲି । ତାଙ୍କ ସାନପୁଅ Kuni Babu (Byapti) ଯେ କି ଉତ୍ସର୍ଗୀକୃତ ଭାବରେ ଶ୍ରବଣ କୁମାରର ଦାୟିତ୍ୱ ସମ୍ପାଦନ କରୁଥିଲେ ଦୀର୍ଘକାଳ ଧରି, ସେ ବି ମୋତେ ନିର୍ନିମେଷ ନୟନରେ ଚାହିଁ ରହିଥିଲେ । ଆଜି ବି ଆପଣଙ୍କ ଲିଖିତ ବୃକ୍ଷଲତାର ଔଷଧି ଗୁଣ ବହିକୁ ସନ୍ତକ କରି ରଖିଛି ।

ଏଭଳି ଜଣେ ସ୍ନେହୀ, ଚୀର ବନ୍ଦନୀୟା ବ୍ୟକ୍ତିତ୍ୱଙ୍କ ସହ ସମ୍ପର୍କରୁ ମୁଁ ବଞ୍ଚିତ ହୋଇଗଲି । ଚାରିଆଡ଼େ ଖାଲି ନୀରବତା ଓ ଶୂନ୍ୟତା । ବିଶ୍ୱାସ ନହେଲେ ବି ଭଗବାନଙ୍କ ନିର୍ଦ୍ଦେଶକୁ ଗ୍ରହଣ କରିବାକୁ ଆମେ ବାଧ୍ୟ ।

ହେ 'ମା'

ଆପଣଙ୍କ ପାଦତଳେ ଲୋତକଭରା ସହସ୍ର ଶ୍ରଦ୍ଧାଞ୍ଜଳି ।

◆◆◆

# ଦୁଇ ଟୋପା ଲୁହ

**ଡଃ. ବିଶ୍ୱଜିତ୍ ମହାପାତ୍ର**

ରେଭେନ୍‌ସା ମହାବିଦ୍ୟାଳୟରେ ୧୯୮୮ ମସିହାରେ ଚ.ଏ କରିବାପାଇଁ Intimation ପାଇବାପରେ ମୁଁ ମୋର ସମସ୍ତ original documents ଡ଼ାକ ମାଧ୍ୟମରେ ପଠାଇଥିଲି । Admission ପରେ Class ପାଇଁ ଚିଠି ଗଲା । ପ୍ରଥମ ଦଫାରେ ୨୯ ଜଣ Admission ନେଇଥିଲେ ଓ ମୋର ରୋଲଂ ନଂ ଥିଲା ଏକ ।

ସ୍କୁଲ ସମୟରେ ରେଭେନ୍‌ସା ମହାବିଦ୍ୟାଳୟ ବିଷୟରେ ମୁଁ ମୋର ବାପାଙ୍କଠାରୁ ବହୁତ କିଛି ଶୁଣିଥିଲି । ପ୍ରଥମ ଦିନ Class ରେ Md. Ayub ଓ ଅରୁଣ ସାର୍‌ଙ୍କ ପରେ ପ୍ରଫେସର କମଳ କୁମାରୀ ପଟ୍ଟନାୟକ ମାଡାମ୍ 5th year ର Practical Roomକୁ ଆସିଲେ ଓ ସମସ୍ତଙ୍କୁ ଠିକଣା ସହ ନାମ ପଚାରିଥିଲେ । ମୋର Roll. No. ୦୧ ଥିବାରୁ ମୁ ପ୍ରଥମେ କହିବାର ସୁଯୋଗ ପାଇଥିଲି । ସମସ୍ତଙ୍କର ପରିଚୟ ପରେ କମଳ ମାଡାମ Physiology and Biochemistry ପାଇଁ କେତେ ଗୁଡ଼ିଏ ସାଧାରଣ ପ୍ରଶ୍ନ ପଚାରିଥିଲେ ଯଥା Normal solution, Molar solution, Molality, Normality, Diffusion, Diffusion Pressure, Osmosis etc. ପ୍ରଶ୍ନର ଉତ୍ତର ଆଲୋଚନା ପରେ ସମସ୍ତଙ୍କ ଉଦ୍ଦେଶ୍ୟରେ କହିଥିଲେ PGରେ ତୁମେ ଭଲ Author ଓ ବଡ଼ ବହି ପଢ଼ିବାର ସୁଯୋଗ ପାଇବ ହେଲେ Fundamental Concept Clear ଥିବା Student ହିଁ ଆଗକୁ ଯାଇ ପାରିବ ନ ହେଲେ ପଛ ଘୁଞ୍ଚା ଦେବ । ମାଡାମଙ୍କର ଏହି ଛୋଟ କଥା ମୋ ମନକୁ ପାଇଥିଲା । ସେହି ଦିନଠାରୁ ବିଭିନ୍ନ Chapter ର Concept ବୁଝି ଭଲ ବହି Reference କରିବାକୁ ଚେଷ୍ଟା କରିଥିଲି ।

P G 6th year ରେ ମୋର ସାଥୀମାନେ ମୋତେ Parija PG Botany ର Seminar Secretary ରୂପେ ବାଛିଲେ । ମାଡାମ ମଧ୍ୟ ଏହା ଶୁଣି ଖୁସି ଥିଲେ । ମୋର ଗତିବିଧି ଓ 5th year Result ରେ Highest mark ଥିବା ଜାଣି Madam ଖୁସିଥିଲେ । ଏହାର ସୁଯୋଗ ନେଇ ମୁଁ ଓ ମୋର ସାଙ୍ଗ ମିହିର କୁମାର ଜେନା ମାଡାମ୍‌ଙ୍କ ଘରକୁ ସପ୍ତାହରେ ଦୁଇ ଥର Ravenshaw Campus ରୁ ସାଇକେଲରେ ଯିବା ଆସିବା ଆରମ୍ଭ କରିଦେଇଥିଲୁ । Department ର ଭଲ ମନ୍ଦ ଖବର କିଛି ସମୟ ଆଲୋଚନା ପରେ ପ୍ରାୟ ଦୁହେଁ ଫେରି ଆସୁ । ଏହି ସୁଯୋଗରେ ଆମ୍ଭେ ଗିରିଜା ଭୂଷଣ ସାରଙ୍କ ସହ ପରିଚୟ ହୋଇ ମାଡାମ୍‌ଙ୍କୁ ୧୯୯୦ ମସିହାରେ ଭିତର କନିକା ପିକ୍‌ନିକ୍ ଯିବାର Proposal ଦେଲୁ ଓ ଗୋଟିଏ ରାତିର ରହଣି ବ୍ୟବସ୍ଥା କରିବାର ଗିରିଜା ଭୂଷଣ ସାରଙ୍କୁ ଅନୁରୋଧ କରିଥିଲୁ । ଗିରିଜାସାର୍ ପ୍ରଥମେ ଅଭିମାନରେ ମନାକରି ତୁମର Professor ଙ୍କୁ ଯିବା ବିଷୟରେ କଥା ହୁଅ କହି ଚାଲି ଯାଇଥିଲେ, Madamଙ୍କ ସହ ଆଲୋଚନା କରି ସ୍ଥିର କରି ଆମ୍ଭେ ପୁନଶ୍ଚ Birth Centenary of Prof. P. K.

Parija ଙ୍କର ଆମ Department ରେ କରିବାକୁ ଗିରିଜା ସାରଙ୍କର ସହଯୋଗ ନେଇ ସେତେବେଳେ ସ୍ୱାସ୍ଥ୍ୟ ମନ୍ତ୍ରୀ ରୂପେ ଦାୟିତ୍ୱ ନେଇଥିବା ସୟଦ ମୁସ୍ତାଫିଜ ଅହମଦଙ୍କୁ ମୁଖ୍ୟ ଅତିଥି ରୂପେ ଆଣିବାରେ ସଫଳ ହୋଇ Ankoor ନାମରେ Bulletin Publish କରିଥିଲୁ। ଏଠାରେ Prof. Kamal madam ଙ୍କର ସାହାଯ୍ୟ ଓ ସହଯୋଗ ବହୁତ ଥିଲା। ଏହାର ସୁଯୋଗ ନେଇ ପୁଣିଥରେ ଆମେ ଗିରିଜା ସାରଙ୍କୁ ଭିତର କନିକା ଯିବାର ପ୍ରସ୍ତାବରେ ରାଜି କରାଇ ସେଠାରେ ରହିବାର ବ୍ୟବସ୍ଥା କରିଥିଲୁ। ଫେରିବା ସମୟରେ ବିଳମ୍ବ ହେତୁ ଆମ୍ଭଙ୍କୁ ଟଙ୍କା ଅଧିକ ଖର୍ଚ୍ଚ କରିବାକୁ ପଡିଥିଲା। ଏଥିପାଇଁ ସମସ୍ତ ଛାତ୍ର ଛାତ୍ରୀ ଅଧିକ ୩୦ଟଙ୍କା ଲେଖାଏଁ ଦେବାକୁ ମୁଁ Madam ଙ୍କୁ ପ୍ରସ୍ତାବ ଦେବା ମାତ୍ରେ Madam ସଙ୍ଗେ ସଙ୍ଗେ Notice ଦେଇଥିଲେ କି Final Admit Card issue ସମୟରେ ସମସ୍ତ ପଇସା Collection କରାଯିବ ଏବଂ ଏହି ପଇସା Seminar Account ରେ Deposit ହେବ।

Seminar Adviser Nirmal Sir ଏବଂ Prof. Kamal Madam ଙ୍କୁ ପ୍ରସ୍ତାବ ଦେଇଥିଲି Seminar week ପାଇଁ। ଏହା ସମସ୍ତ ସାର ଓ ମାଡାମ୍ ଦ୍ୱାରା ଗ୍ରହଣୀୟ ହୋଇଥିଲା। ପ୍ରଥମଥର ପାଇଁ Department ରେ ସାତ ଦିନ ଧରି ଦୁଇ ଦୁଇ ଜଣ Seminar Topic Present କରିଥିଲେ।

Prof. Kamal Madam ଙ୍କ ନୀଳ ରଙ୍ଗର ମାରୁତି ଠବଭରେ ପ୍ରାୟ ଦିନ ୧୧ଟାରୁ ୧୧.୩୦ ମଧ୍ୟରେ ଆସୁଥିଲେ। 6th year ରେ Madam ଦେଇଥିବା Notice ରେ କିଛି ପିଲା Pathology, Cytogenetics Special Paper ନେଇଥିଲେ ହେଲେ ମୁଁ Biochemistry & Enzymology ନେବାକୁ ପସନ୍ଦ କରିଥିଲେ। Special paper Practical ରେ Kamal Madam Internal ଥିଲେ। ଓଡ଼ିଶା ବାହାରୁ External ଆସିବା ଶୁଣି ଆମ୍ଭେ ମାନେ ଟିକେ ଭୟଭୀତ ଥିଲୁ, କିନ୍ତୁ Kamal Madan କହିଥିଲେ Vivavoce ପାଇଁ ଟିକେ Serious ରହିବ। ଯଦି Viva ତୁମର ଠିକ୍ ତେବେ Mark ପାଇବାରେ କିଛି ଅସୁବିଧା ହେବନି କାରଣ Pradeep Kumar Behera Sir ଓ ରେବତୀ ଭାଇଙ୍କ ସାହାଯ୍ୟରେ ତୁମେ Practical ସହଜରେ କରିପାରିବ। ଶେଷରେ ମୋର ଏହି Practicalùe Hihest Mark ରହିଥିଲା ତାହା ଆଜି ବି ସ୍ମରଣୀୟ।

Madam ଙ୍କ ବିଷୟରେ ଲେଖିଲେ ଲେଖୁଥିବି.... ତାଙ୍କର ମୋର ଆତ୍ମୀୟତା ଗଢି ଉଠିବା ପୂର୍ବରୁ ତାଙ୍କର ଗୁମ୍‌ସୁମ୍ କଥା ଓ ବ୍ୟକ୍ତିତ୍ୱ ମତେ ଆପଣାର କରିଥିଲା। ଏ ସଂସାରରେ ଭଲ ମଣିଷଟିଏ ଖୋଜି ପାଇବା କଷ୍ଟ। ମୁଁ କହିବି Kamal Madam ପ୍ରଥମେ ଜଣେ ଭଲ ମଣିଷ। ପରେ ଜଣେ ଶିକ୍ଷାବିତ୍ ଓ ସ୍ନେହମୟୀ 'ମା'। ସେ ଥିଲେ ଅନୁଷ୍ଠାନ, ଆକାଶ ପରି ଅସୀମ ଆଉ ଉଦାର, ସ୍ନେହଶୀଳ, ଫୁଲପରି କୋମଳ, ମଳୟ ପରି ଶୀତଳ, କପୋତ ପରି ଶାନ୍ତ, ଇନ୍ଦ୍ରଧନୁ ପରି ଅନେକ ସ୍ୱପ୍ନ ଗଢି ତୋଳିବାର ଅଦମ୍ୟ ଇଚ୍ଛା।

"ମଣିଷ ଦିନେ ମରିବ, ଦେବତା ବି ଜନ୍ମ ହେଲେ ମରେ" ସାର୍ଥକ ଜନମ ତାର ଯାହା ପାଇଁ ଜନ୍ମମାଟି ଝୁରେ। ଜାତସ୍ୟ ହି ଧ୍ରୁବ ମୃତ୍ୟୁ। ଋତୁଟିଏ ଅତୀତ ହେଲେ ଆଗାମୀ ବର୍ଷକୁ ଫେରିଆସେ। ଆକାଶରୁ ଚନ୍ଦ୍ରମା କ୍ଷୟ ହେଲେ ପୁନର୍ବାର ଆର ପୂର୍ଣ୍ଣମୀରେ ଦୀପ୍ତିମାନ ହୋଇଥାଏ ମାତ୍ର ନିମ୍ନଗାମୀ ଜଳ ଓ ମଣିଷ ଯୌବନ ପଛକୁ ନ ଫେରିବା ପରି ସ୍ୱର୍ଗତା କମଳ ମାଡାମ ଅଣଲେଉଟା, ହେଲେ ତାଙ୍କଦ୍ୱାରା ଗଢା ହୋଇଥିବା ବହୁ ଉଦ୍ଭିଦ ବିଜ୍ଞାନୀ ଆଜି ଯେ କୌଣସି କୋଣରେ ଥାଆନ୍ତୁ ନା କାହିଁକି ସମସ୍ତଙ୍କର ଦୁଇଟୋପା ଲୁହ ହିଁ ତାଙ୍କୁ ଚିରଦିନ ପାଇଁ ଅମର ରଖିବ।


ସହକାରୀ ପ୍ରଫେସର<br>
ଉଦ୍ଭିଦ ବିଜ୍ଞାନ ବିଭାଗ<br>
ଏନ୍ ସି ସ୍ୱୟଂଶାସିତ ମହାବିଦ୍ୟାଳୟ<br>
ଯାଜପୁର

# କମଳ ଅପା ଆଉ ନାହାନ୍ତି

**ମୃତ୍ୟୁଞ୍ଜୟ ପ୍ରଧାନ**

ଚଳିତ ମାସ ୧୭ ତାରିଖ, ମଙ୍ଗଳବାର । ତା' ପର ବୁଧବାର ଦିନ ସକାଳୁ ପ୍ରାତଃଭ୍ରମଣ ସାରି ଘରେ ବସିଛି । ପୁରୀରୁ ଟେଲିଫୋନ୍ ଆସିଲା ରମାଦେବୀ ମହିଳା ମହାବିଦ୍ୟାଳୟର ପ୍ରାକ୍ତନ ଅଧ୍ୟକ୍ଷା ମାଡ଼ାମ୍ ବିଷ୍ଣୁପ୍ରିୟା ଯେମାଙ୍କ ପାଖରୁ । "ତମେ ଜାଣିଛ । କମଳ ଅପା ଆଉ ନାହାନ୍ତି । ତାଙ୍କ ବଡ଼ପୁଅ ଅଭିଜିତ୍ ଆସିଲେ ସ୍ଥିର ହେବ କଟକ କି ପୁରୀରେ ଶେଷକୃତ୍ୟ ସମ୍ପନ୍ନ କରାଯିବ । ମତେ ବୁଝିବାଝି କୁହ । ଯଦି ପୁରୀ ସ୍ୱର୍ଗଦ୍ୱାରରେ ହୁଏ, ତେବେ ମୁଁ ଅନ୍ତିମ ଦର୍ଶନର ସୁବିଧା ପାଇପାରନ୍ତି ।" ପ୍ରକୃତପକ୍ଷେ ପ୍ରଫେସର ଡ. କମଳ କୁମାରୀ ପଟ୍ଟନାୟକ ହେଉଛନ୍ତି ବିଶିଷ୍ଟ ସମାଜସେବୀ ସ୍ୱର୍ଗତ ଗିରିଜାଭୂଷଣ ପଟ୍ଟନାୟକଙ୍କ ଧର୍ମପତ୍ନୀ । ଗିରିଜା ବାବୁ ଯଦିଓ ବହୁଦିନ ଧରି ବାର୍ଦ୍ଧକ୍ୟ ରୋଗରେ ଶଯ୍ୟାଶାୟୀ ଥିଲେ, ମୃତ୍ୟୁ ପୂର୍ବରୁ କହିଥିଲେ କଟକରେ ତାଙ୍କ ଶବ ସତ୍କାର କରିବା ପାଇଁ । ତେଣୁ ପୁରୀ ସ୍ୱର୍ଗଦ୍ୱାର ନିଆଯାଇ କମଳ ମାଡ଼ାମ୍‌ଙ୍କ ମରଶରୀରର ଶେଷକୃତ୍ୟ ସମ୍ପନ୍ନ କରାଯିବା ପାଇଁ ସ୍ଥିର ହେଲା । ଖବରଟି ଯେମା ମାଡ଼ାମ୍‌ଙ୍କ ପାଖକୁ ପଠାଇ ଦେଲି । ୧୯୬୯-୭୧ ପର୍ଯ୍ୟନ୍ତ ରେଭେନ୍ସା କଲେଜରେ ଉଦ୍ଭିଦ ବିଜ୍ଞାନର ଛାତ୍ର ଥିବାରୁ କମଳ ମାଡ଼ାମ୍‌ଙ୍କର ମୁଁ ଥିଲି ଛାତ୍ର । ତାଙ୍କର ଶିକ୍ଷାଦାନ ପଦ୍ଧତି ଅତି ଉଚ୍ଚକୋଟିର ଥିଲା । ସେ ଏତେ ସ୍ନେହୀ ଥିଲେ ଯେ ଉଦ୍ଭିଦବିଜ୍ଞାନ ବିଭାଗର ସମସ୍ତ ସହକର୍ମୀ, ଛାତ୍ରଛାତ୍ରୀଙ୍କ ନିକଟରେ କମଳ ଅପା ଭାବରେ ଆଦରଣୀୟା ହୋଇଥିଲେ । ଜଣେ ସ୍ନେହୀ, ନିଷ୍ଠାପର, କର୍ତ୍ତବ୍ୟପରାୟଣ, କଠିନ ଅଧ୍ୟବସାୟ ଓ ଛାତ୍ରବତ୍ସଳ ହୋଇଥିବାରୁ ସେ ସମସ୍ତଙ୍କର ଶ୍ରଦ୍ଧାଭାଜନ ହୋଇପାରିଥିଲେ । ସେ ଥିଲେ ଉଦ୍ଭିଦବିଜ୍ଞାନୀ, ଜନପ୍ରିୟ ବିଜ୍ଞାନ ଲେଖିକା, ଗବେଷକ ଓ ଅନେକ ପାଠ୍ୟପୁସ୍ତକର ରଚୟିତା । ଜଣେ ଅଭିଜ୍ଞ ବିଜ୍ଞାନ ଲେଖିକା ଭାବରେ ସେ ଅନେକ ପୁସ୍ତକ ରଚନା କରି ଅଜସ୍ର ପ୍ରଶଂସାଭାଜନ ହୋଇପାରିଛନ୍ତି । ତାଙ୍କ ରଚିତ 'ବୃକ୍ଷଲତାର ଔଷଧି ଗୁଣ' ପୁସ୍ତକ ବହୁ ଭାବରେ ଆଦୃତି ଲାଭ କରିଛି । ସଂକ୍ଷେପରେ ସେ ଥିଲେ ଜଣେ ବହୁମୁଖୀ ପ୍ରତିଭା ସମ୍ପନ୍ନ ବ୍ୟକ୍ତି ଯାହାଙ୍କର ବିୟୋଗ ଆମ ସମାଜ ପାଇଁ ଏକ ଅପୂରଣୀୟ କ୍ଷତି କହିଲେ ଅତ୍ୟୁକ୍ତି ହେବ ନାହିଁ । ଛାତ୍ର ଭାବେ ଜଗନ୍ନାଥଙ୍କ ପାଖରେ ମୋ'ର ଏତିକି ପ୍ରାର୍ଥନା ତାଙ୍କର ଆତ୍ମାର ସଦ୍‌ଗତି ହେବା ସଙ୍ଗେ ସଙ୍ଗେ ପରିବାରବର୍ଗଙ୍କୁ ସାନ୍ତ୍ୱନା ଏବଂ ଆଜି ସ୍ୱର୍ଗରେ ଥାଇ ମଧ୍ୟ ସେ ଆମ ପ୍ରେରଣାର ଉତ୍ସ ହୋଇଥାନ୍ତୁ ।

◆◆◆

# ସ୍ମୃତିରେ କମଳ ମାଉସୀ

**ଶକ୍ତିପ୍ରସାଦ ଦାସ**

୧୯୮୪ ମସିହା କଥା । ମୁଁ କଟକର ଏକ ଅପକ୍ଷୋକୃତ ଅଜ୍ଞାତ ବିଦ୍ୟାଳୟରୁ ଯାଇ ସେକେଣ୍ଡାରୀ ବୋର୍ଡ଼ ସ୍କୁଲରେ ଅଷ୍ଟମ ଶ୍ରେଣୀରେ ନାମ ଲେଖାଇଲି । ସେଠାରେ ମୋର ପରିଚୟ ବ୍ୟାପ୍ତି ଆଲବର୍ଟ ନାମକ ବାଳକ ସହିତ ହେଲା, ଯିଏ ମୋର ଶ୍ରେଣୀ ଓ ମୋ' ସେକ୍ସନରେ ମୋର ସହପାଠୀ ଥିଲା । ତା'ର ପାଶ୍ଚାତ୍ୟ ଶୈଳୀର ନାଁରୁ ମୋର ଧାରଣା ହୋଇଥିଲା, ସେ ବଡ଼ ଘର ପିଲା । କିନ୍ତୁ ବ୍ୟାପ୍ତି କେବେ ନିଜ ପରିବାରର ପୃଷ୍ଠଭୂମି ସମ୍ପର୍କରେ କୌଣସି ସୂଚନା ଦେଉ ନଥିଲା । ମୁଁ ଥିଲି ଜଣେ ସାଧାରଣ ଘରର ପିଲା । ସେ ଥିଲା ଏକ ଆଭିଜାତ୍ୟପୂର୍ଣ୍ଣ ପରିବାରର ଦାୟାଦ । କିନ୍ତୁ, ପୂର୍ବ ଜନ୍ମରୁ ଲମ୍ବିଥିବା କେଉ ଅଦୃଶ୍ୟ ଡୋର ଆମକୁ ପରସ୍ପରର ନିକଟବର୍ତ୍ତୀ କରାଇଲା । ସ୍କୁଲରେ ଆମେ ଦୁହେଁ ଏକା ବେଞ୍ଚରେ ବସୁଥିଲୁ ।

କିଛିଦିନ ପରେ (ସମ୍ଭବତଃ ନବମ ଶ୍ରେଣୀରେ) ଆମ ସ୍କୁଲ୍ ତରଫରୁ ଆମକୁ ରାଷ୍ଟ୍ରଭାଷା ରୋଡ଼ସ୍ଥିତ 'ଦି ୟୁନିଭର୍ସ'କୁ ଏକ ବିଜ୍ଞାନ ପ୍ରତିଯୋଗିତା ପାଇଁ ବୁଲାଇ ନିଆଗଲା । ସେତେବେଳେ 'ଦି ୟୁନିଭର୍ସ'ର ନାମ, ପରିବେଶ ଓ ପ୍ରତିଯୋଗିତା ପରିଚାଳନା ଶୈଳୀ ଆମ ବାଳୁତ ପ୍ରାଣରେ ଚମକ ସୃଷ୍ଟି କରିଥିଲା । ସେତେବେଳେ ମୁଁ ଜାଣିବାକୁ ପାଇଲି ଯେ ବ୍ୟାପ୍ତିର ବାପା (ପ୍ରଖ୍ୟାତ ସାମ୍ୟବାଦୀ ନେତା ୵ ଗିରିଜାଭୂଷଣ ପଟ୍ଟନାୟକ) 'ଦି ୟୁନିଭର୍ସ'ର ମୁଖ୍ୟ ପ୍ରତିଷ୍ଠାତା । ଆଉ ମଧ ଜାଣିବାକୁ ପାଇଲି ଯେ ବ୍ୟାପ୍ତିର ବାସସ୍ଥାନ ହେଉଛି 'ଦି ୟୁନିଭର୍ସ'ର ଅତି ନିକଟରେ ଥିବା ଏକ ବୃହତ ସରକାରୀ ବଙ୍ଗଳାରେ । ମଝିରେ ମଝିରେ 'ଦି ୟୁନିଭର୍ସ'ରେ inter - school ବକ୍ତୃତା (debate) ପ୍ରତିଯୋଗିତା ବା ବିଜ୍ଞାନ ପ୍ରତିଯୋଗିତା ହେଉଥିବାର ଶୁଣିବାକୁ ମିଳେ । କିନ୍ତୁ ସ୍କୁଲରେ ପଢୁଥିବା ସମୟରେ ମୁଁ ସେଇ ଗୋଟି ଏ ଥର ହିଁ 'ଦି ୟୁ ନିଭର୍ସ' ଯାଇଥିବାର ମନେଅଛି ।

ସ୍କୁଲ ପଢ଼ା ସାରିବା ପରେ ମୁଁ ଓ ବ୍ୟାପ୍ତି ରେଭେନ୍ସା ମହାବିଦ୍ୟାଳୟରେ +୨ ବିଜ୍ଞାନ ପଢ଼ିଲୁ । ମୋ' ବାପା ସେତେବେଳେ ରେଭେନ୍ସାରେ ଇଂରାଜୀ ଅଧ୍ୟାପକ ଥାଆନ୍ତି । ମୁଁ ଜାଣିବାକୁ ପାଇଲି ଯେ ବ୍ୟାପ୍ତିର ମା' (ଡଃ କମଳ କୁମାରୀ ପଟ୍ଟନାୟକ) ରେଭେନ୍ସାରେ ବଟାନି (ଉଦ୍ଭିଦ ବିଜ୍ଞାନ) ବିଭାଗର ପ୍ରଫେସର ଅଛନ୍ତି । ଏ ବିଷୟରେ ମୁଁ କେତେବେଳେ କେମିତି ଘରେ ଆଲୋଚନା କରିଛି । ଆଲୋଚନା ବେଳେ ଲକ୍ଷ୍ୟ କରେ ବାପା ଓ ବୋଉ ଗିରିଜା ମଉସା ଓ କମଳ ମାଉସୀଙ୍କୁ ଭଲଭାବେ ଜାଣିଛନ୍ତି ଓ ସେମାନଙ୍କୁ ଖୁବ୍ ସମ୍ମାନ କରନ୍ତି । ବାପା ଓ ବୋଉ ଘରେ କମଳ ମାଉସୀଙ୍କ ବିଷୟରେ କଥାବାର୍ତ୍ତା ହେଲାବେଳେ 'କମଳ ଅପା' ବୋଲି କୁହନ୍ତି ।



ରେଭେନ୍ସାରେ +୨ ବିଜ୍ଞାନ ପଢୁଥିବା ସମୟରେ ମୁଁ କମଳ ମାଉସୀଙ୍କୁ ଦେଖିବାର ସୁଯୋଗ ପାଇଲି । କେବଳ ଦୂରରୁ ଦେଖୁଥିଲି । କେବେ କଥାବାର୍ତ୍ତା ହେବାକୁ ସାହାସ ଜୁଟାଇ ପାରିନଥିଲି । ନାମର ଅନୁରୂପ ରୂପ । ମାଉସୀଙ୍କ ସୁନ୍ଦର ପ୍ରଶାନ୍ତ ମୁଖମଣ୍ଡଳରେ ଚକ୍ଷୁ ଦୁଇଟି ସଦା କମଳ ପରି ଢଳଢଳ । ରାଜାଝିଅର ଠାଣି । ମୋର ଚତୁର୍ଥ ଇଚ୍ଛାଧୀନ (4th Optional) ବିଷୟ Biology ନଥିଲା । ଏଣୁ ମାଉସୀଙ୍କଠାରୁ ପ୍ରତ୍ୟକ୍ଷ ଶିକ୍ଷାଲାଭ କରିବାର ସୁଯୋଗରୁ ମୁଁ ବଞ୍ଚିତ ଥିଲି । ବଡ଼ଲୋକଙ୍କୁ ବାରମ୍ବାର ଦେଖିବାର ଇଚ୍ଛା ଅଧିକାଂଶଙ୍କର ଥାଏ । ମୁଁ ମଧ ମାଉସୀଙ୍କୁ ଦେଖିବା ପାଇଁ ଅନେକଥର କିଛି କାମ ନଥିଲେ ବି ବଟାନି ବିଭାଗ ବାଟ ଦେଇ ଯାଉଥିଲି । ଅଧିକାଂଶ ଥର ଅସଫଳ ହେଉଥିଲି । କଦବା କ୍ୱଚିତ୍ ମାଉସୀଙ୍କୁ ଦେଖି ପାରୁଥିଲି । ମାଉସୀ ଥିଲେ PhD ଡିଗ୍ରୀ ପାଇବାରେ ପ୍ରଥମ ଓଡ଼ିଆ ମହିଳା ଏବଂ ସେ ଯେଉଁ ବିଷୟ ଉପରେ ଗବେଷଣା କରୁଥିଲେ (Tartaric Acid Metabolism in Tamarindus Indica), ତହିଁରେ ଉତ୍କର୍ଷ ତାଙ୍କୁ ବିରଳ ଖ୍ୟାତିର ଅଧିକାରିଣୀ କରି ତୋଳିଥିଲା । ରେକର୍ଡ଼ ସମୟରେ (ତିନିବର୍ଷରୁ କମ ସମୟରେ) ସେ ନିଜ ଡକ୍ଟ.ରେ ଡିଗ୍ରୀ ହାସଲ କରିଥିଲେ । ନିରନ୍ତର ଗବେଷଣା କାର୍ଯ୍ୟରେ ବ୍ୟାପୃତ ରହି ସେ ଅନେକ ଆନ୍ତର୍ଜାତୀୟ ସନ୍ଦର୍ଭ ପ୍ରକାଶ କରିଥିଲେ (ଜୀବନକାଳ ମଧ୍ୟରେ ୧୮୦-ରୁ ଅଧିକ) । ଅନେକ ଛାତ୍ରଛାତ୍ରୀ ତାଙ୍କ ଅଧୀନରେ Ph.D ବା M.Phil- ର ଗବେଷଣା କରୁଥିଲେ (ଜୀବନକାଳ ମଧ୍ୟରେ: Ph.d-୧୪, M.Phil-୧୬ । ଏହିସବୁ କାରଣରୁ ସେ ଖୁବ୍ ଅଳ୍ପ ବୟସରେ ପ୍ରଫେସରହୋଇ ପାରିଥିଲେ । ଆମେ +୨ ପଢ଼ିଲାବେଳକୁ ସେ ପ୍ରଫେସର ହୋଇସାରିଥିଲେ । ଅଧ୍ୟାପକ ମହଲରେ ସେ ବିଶେଷ ସମ୍ମାନର ଅଧିକାରିଣୀ ଥିଲେ । ଅଧିକାଂଶ ଅଧ୍ୟାପକ ତାଙ୍କୁ 'କମଳ ଅପା' ବୋଲି ଡାକୁଥିଲେ ।

+୨ ପରେ ମୁଁ ଇଞ୍ଜିନିୟରିଂ ପଢ଼ିବାକୁ ଓଡ଼ିଶା ବାହାରକୁ ଗଲି । ପଢ଼ା ସରିବା ପରେ କିଛିଦିନ ଓଡ଼ିଶା ବାହାରେ ଚାକରି କଲି । ଓଡ଼ିଆ ଭାଷା ଓ ଓଡ଼ିଶାର ପାଣିପବନଠାରୁ ଦୂରରେ ରହିବା ମୋତେ ଅଣନିଶ୍ୱାସୀ କରିଦେଲା । ୧୯୯୭ ମସିହାରେ ମୁଁ ଓଡ଼ିଶା ମାଟିକୁ ପୁଣି ଫେରିଆସିଲି । ଓଡ଼ିଶାରେ ରହିବାରୁ ମୁଁ ଓଡ଼ିଶାର ସମସାମୟିକ ତୁଙ୍ଗ ବ୍ୟକ୍ତିତ୍ୱଙ୍କ ସମ୍ପର୍କରେ ଅଧିକ ଭଲଭାବେ ଜାଣିବାର ସୁଯୋଗ ପାଇଲି । ତା' ମଧ୍ୟରୁ କମଳ ମାଉସୀ ଅନ୍ୟତମ ଥିଲେ । ତାଙ୍କର ସମସାମୟିକ ଓ ତାଙ୍କଠାରୁ କନିଷ୍ଠମାନେ ବିଭିନ୍ନ କଲେଜର ପ୍ରିନସିପାଲ୍ ବା ଶିକ୍ଷା ବିଭାଗର ଡି.ପି.ଆଇ ହେବାର ସୁଯୋଗ ପାଇଥିଲେ ବି କୌଣସି କାରଣରୁ କମଳ ମାଉସୀ ଏଥିରୁ ବଞ୍ଚିତ ହୋଇଥିଲେ । ସେ କେବେ ଏଭଳି ପଦ-ପଦବୀ ପାଇଁ 'ଲବି' କରିନଥିଲେ । ଶିକ୍ଷାବିଭାଗର ଗୌରବ ହୋଇଥାବ ସତ୍ତ୍ୱେ ସେ କାହିଁକି ଏଥିରୁ ବଞ୍ଚିତ ହୋଇଥିଲେ ତାହା ବିସ୍ମୟଜନକ । ପରେ ଅବଶ୍ୟ ସେ ଓଡ଼ିଶା ଲୋକସେବା ଆୟୋଗ (ଓଡ଼ିଶା ପବ୍ଲିକ ସର୍ଭିସ୍ କମିଶନ୍)ର ସଦସ୍ୟା ଭାବେ ମନୋନୀତ ହୋଇଥିଲେ । ଜଣେ ନିର୍ମଳ ଓ ଦୃଢ଼ମନା ବ୍ୟକ୍ତି ଭାବେ ତାଙ୍କର ସୁନାମ ଥିଲା । ପ୍ରଶାସନିକ ନିଷ୍ପତ୍ତିଗୁଡ଼ିକରେ ତାଙ୍କ ବ୍ୟକ୍ତିତ୍ୱ ସମ୍ପୂର୍ଣ୍ଣ ପ୍ରତିଫଳିତ ହେଉଥିଲା । ଲୋକସେବା ଆୟୋଗ ଭଳି ଏକ ସାମ୍ବିଧାନିକ ସଂସ୍ଥାର ଗାରିମା ରକ୍ଷା କରି ସେ ସମ୍ପୂର୍ଣ୍ଣ ନିଷ୍ଠା ଓ ପାରଦର୍ଶିତା ସହ କାର୍ଯ୍ୟ କରିଥିଲେ ।





ଶିକ୍ଷାକ୍ଷେତ୍ରରେ ତାଙ୍କର ଅନେକ ଉଲ୍ଲେଖନୀୟ ଅବାଦନ ଥିଲା । +୩ ବିଜ୍ଞାନ ଛାତ୍ରଛାତ୍ରୀଙ୍କ ପାଇଁ ସେ 'Evolution of Life' (Ancillary Course) ନାମକ ପୁସ୍ତକ ରଚନା କରିଥିଲେ । ଉତ୍କଳ ବିଶ୍ୱବିଦ୍ୟାଳୟ ଓ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ସ୍ନାତକ ଛାତ୍ରଛାତ୍ରୀଙ୍କ ପାଇଁ ସେ ଉଦ୍ଭିଦ ବିଜ୍ଞାନର ପାଠ୍ୟପୁସ୍ତକ (Text Book) ରଚନା କରିଥିଲେ । +୩ ବିଜ୍ଞାନ ବିଦ୍ୟାର୍ଥୀଙ୍କ ପାଇଁ 'Environmental Science' ନାମକ ବହି ଲେଖିଥିଲେ । ଏହାଛଡ଼ା +୨ ବିଜ୍ଞାନ ଓ ସ୍କୁଲ ପିଲାମାନଙ୍କ ପାଇଁ ସେ ଅନେକ ପାଠ୍ୟପୁସ୍ତକ ଲେଖିଥିଲେ ।

ଓଡ଼ିଶାରେ ରହିବା ପରଠାରୁ ବ୍ୟାପ୍ତି ସହିତ ମୋର ମଝିରେ ମଝିରେ ଭେଟ ହୁଏ, ବାର୍ତ୍ତାଳାପ ହୁଏ; କିନ୍ତୁ ମୁଁ ଆଦୌ ଜାଣି ନଥିଲି ଯେ ମାଉସୀ ଉଭୟ ବିଜୁ ପଟ୍ଟନାୟକ ଓ ଜାନକୀବଲ୍ଲଭ ପଟ୍ଟନାୟକଙ୍କ ନିକଟ ସମ୍ପର୍କୀୟ । କାରଣ ବ୍ୟାପ୍ତି ସେ ସମ୍ବନ୍ଧରେ କେବେ କିଛି ଆଭାସ ଦିଏନାହିଁ । ଉଭୟ ଓଡ଼ିଶାର ତୁଙ୍ଗ ନେତା । ଉଭୟ ଅନେକଥର ରାଜ୍ୟର ମୁଖ୍ୟମନ୍ତ୍ରୀ ରହିଛନ୍ତି; ତା' ଛଡ଼ା କେନ୍ଦ୍ରରେ ମନ୍ତ୍ରୀ ରହିଛନ୍ତି । ୨୦୦୧ ମସିହାରେ ଗିରିଜା ମଉସା ତାଙ୍କର ଆତ୍ମଜୀବନୀ ଲେଖିଲେ - 'ଜୀବନର ବାଟେ ଘାଟେ' । ବାପା ଏହି ପୁସ୍ତକଟିକୁ ଆଦରରେ ଘରକୁ ଆଣିଲେ । ଏହାକୁ ପଢ଼ି ମୁଁ ଜାଣିଲି ଯେ ମାଉସୀଙ୍କ ବଡ଼ଭଉଣୀ (ଇନ୍ଦୁଲତା)ଙ୍କ ନଣନ୍ଦର ପୁଅ ହେଉଛନ୍ତି ଜାନକୀବଲ୍ଲଭ ପଟ୍ଟନାୟକ । ସେହିପରି ମାଉସୀଙ୍କର ମାମୁଁ ହେଉଛନ୍ତି ବିଜୁ ପଟ୍ଟନାୟକ ।

ଆଉ ଏକ କାରଣ ହେତୁ ମଉସା, ମାଉସୀ ଓ ବ୍ୟାପ୍ତିଙ୍କ ସାଙ୍ଗରେ ମୋର ବାରମ୍ବାର ସାକ୍ଷାତ ହେଉଥିଲା । ମୋ' ବାପା ବିଡ଼ାନାସୀର ଏକ ବ୍ୟକ୍ତିଠାରୁ କିଛି ଜମି କିଣିଥିଲେ । ଗିରିଜା ମଉସା, ଅଧ୍ୟାପକ ପରେଶ ଦାସ (ରେଭେନ୍ସା-ଇଂରାଜୀ), ସେକେଣ୍ଡାରୀ ବୋର୍ଡ଼ ଅଫିସ୍‌ର ରାୟ ବାବୁ ଓ କଟକର ଅନେକ ପ୍ରତିଷ୍ଠିତ ଲୋକ ମଧ୍ୟ ଉକ୍ତ ବ୍ୟକ୍ତିଠାରୁ ସେହି ସମାନ ପ୍ରକ୍ରିୟାରେ ସମାନ ସ୍ଥାନରେ (ଅର୍ଥାତ୍ ଗୋଟିଏ ବଡ଼ ଜମିକୁ ଭାଗଭାଗ କରି) ଜମି କିଣିଥିଲେ । କିନ୍ତୁ କିଛି ଗୋଟେ ସମସ୍ୟା ଉପୁଜିଥିଲା । କଟକ ଡେଭେଲପମେଣ୍ଟ ଅଥରିଟି (CDA) ଉକ୍ତ ଜମିକୁ ଅଧିଗ୍ରହଣ କରିବାକୁ ଚେଷ୍ଟା କରୁଥିଲା । ଏଣୁ ଗିରିଜା ମଉସାଙ୍କ ନେତୃତ୍ୱରେ ସମସ୍ତେ ସମବେତ ହୋଇ କେସ୍ ଲଢୁଥିଲେ । ବାପା ଅଧିକାଂଶଥର ମିଟିଂକୁ ଯାଇପାରନ୍ତି ନାହିଁ; ଏଣୁ ମୋତେ ପଠାନ୍ତି । ଅଧିକାଂଶ ସମୟରେ 'ଦି ୟୁନିଭର୍ସରେ ମିଟିଂ ହୁଏ । ଗିରିଜା ମଉସା ସର୍ବମାନ୍ୟ ନେତା । ତାଙ୍କ ଆଦେଶକୁ ସମସ୍ତେ ମାନନ୍ତି । ମୁଁ ତ ଅନ୍ୟମାନଙ୍କ ନଜରରେ ଛୋଟ ପିଲା (ଯଦିଓ ସେତେବେଳକୁ ମୁଁ ଅନେକ ବର୍ଷ ହେଲା ଚାକିରି କଲିଣି) । ମୁଁ ଚୁପ୍ ଚାପ୍ ବସେ । ମିଟିଂ ସାରିବା ପରେ ପାଖରେ ଥିବା ଗିରିଜା ମଉସାଙ୍କ କ୍ୱାଟର୍ସ (7, Raashravasha Road, Cuttack - 753001)କୁ ଯାଇ ବ୍ୟାପ୍ତିକୁ ଦେଖାକରେ । ସେହି ସମୟରେ ମାଉସୀ ପ୍ରାୟ ଦେଖା ହୁଅନ୍ତି । ମୁଁ ସମ୍ଭ୍ରମରେ ନମସ୍କାର ହୁଏ । ବେଳେବେଳେ ମୁଁ ମାଉସୀଙ୍କର ଦେଖା ପାଏ ନାହିଁ । ମୁଁ ମୋ' ମନକଥା ବ୍ୟାପ୍ତି ଆଗରେ ବ୍ୟକ୍ତ



କରିପାରେ ନାହିଁ । କିନ୍ତୁ ରେଭେନ୍ସାରେ ପଢୁଥିବା ସମୟ ଭଳି ସବୁବେଳେ ମୋର ଇଚ୍ଛା - ମାଉସୀଙ୍କ ଦେଖା ପାଇବା । ସେ ମୋ' ପାଇଁ ବିଦ୍ୟା ଏବଂ ବ୍ୟକ୍ତିତ୍ୱର ଏକ ସମୁଚ୍ଚ ଆଦର୍ଶ ଥିଲେ । ତାଙ୍କ ଘରକୁ ଗଲାବେଳେ ଅନେକ ସମୟରେ ଦେଖେ ଯେ କଟକର ବହୁ ମାନ୍ୟଗଣ୍ୟ ବ୍ୟକ୍ତି ଅନେକ ବିଷୟରେ ଆଲୋଚନା କରିବା ପାଇଁ ମଉସା-ମାଉସୀଙ୍କ ପାଖକୁ ଆସିଥାନ୍ତି । କେହିକେହି କେବଳ ଦେଖା କରିବା ପାଇଁ ଆସିଥାନ୍ତି; କାରଣ ମଉସା-ମାଉସୀ ସମସ୍ତଙ୍କ ପାଇଁ ପ୍ରେରଣାର ଉତ୍ସ ଥିଲେ । ସମସ୍ତେ ତାଙ୍କୁ ଶ୍ରଦ୍ଧା ଓ ସମ୍ମାନ କରୁଥିଲେ ।

ସେ ସମୟରେ ଜାଣିବାକୁ ପାଇଥିଲି ଯେ ମାଉସୀ ତାଙ୍କ Ph.D ସମୟରେ ଏକ ନୂତନ ଏନଜାଇମ୍ ଆବିଷ୍କାର କରିଥିଲେ ଯାହାର ନାମ ଥିଲା 'Tartaric Racemase' । ଏହାକୁ ସେ 'Tamarindus Indica'ରୁ ପ୍ରସ୍ତୁତ କରିଥିଲେ । ମାଉସୀ Ph.D କରୁଥିଲେ ଆଲାହାବାଦ ବିଶ୍ୱବିଦ୍ୟାଳୟରେ । ସେତେବେଳେ ପ୍ରାଣକୃଷ୍ଣ ପରିଜାଙ୍କର ନାଁ ଖୁବ୍ ଡାକ । ତାଙ୍କର ବିଭାଗ ବି ବଟନି (ଉଦ୍ଭିଦ ବିଜ୍ଞାନ) ଓ ସେ ରେଭେନ୍ସାରେ ବିଭାଗୀୟ ମୁଖ୍ୟ ଥିଲେ । ଉଦ୍ଭିଦ ବିଜ୍ଞାନରେ ପୃଥିବୀସାରା ଲୋକ ତାଙ୍କୁ ଚିହ୍ନିଥିଲେ । ତେଣୁ ମାଉସୀଙ୍କୁ ଆଲାହାବାଦ ବିଶ୍ୱବିଦ୍ୟାଳୟରେ ସମସ୍ତେ 'ପରିଜା ଲାବୋରେଟୋରୀରୁ ଆସିଥିବା ଛାତ୍ରୀ' ଭାବେ ଜାଣିଥିଲେ । ସେତେବେଳେ ଉଦ୍ଭିଦ ବିଜ୍ଞାନ ପାଇଁ ଭିଜିଟିଂ ପ୍ରଫେସର ଭାବେ ବେନେଟ୍ କ୍ଲାର୍କ ଆଲାହାବାଦ ବିଶ୍ୱବିଦ୍ୟାଳୟ ଆସିଥାନ୍ତି । ତାଙ୍କୁ ବିଶ୍ୱବିଦ୍ୟାଳୟର କୁଳପତି ଅନୁରୋଧ କଲେ କି ସେ ପୁନଃ ପରୀକ୍ଷା କରି ନିଶ୍ଚିତ ହୁଅନ୍ତୁ ଯେ କମଳ କୁମାରୀଙ୍କର ଆବିଷ୍କାର ମୌଳିକ ଓ ଉପାଦେୟ । ଅନୁରୋଧ ରକ୍ଷା କରି ପ୍ରଫେସର କ୍ଲାର୍କ ଆଲାହାବାଦ ବିଶ୍ୱବିଦ୍ୟାଳୟରେ ତାଙ୍କ ରହଣି ଦୁଇଦିନ ବଢ଼ାଇଦେଲେ ଓ କମଳ ମାଉସୀଙ୍କ ଆବିଷ୍କାର ଉପରେ ସ୍ୱୀକୃତିର ମୋହର ମାରିଲେ ।

ଅବସର ଗ୍ରହଣ ପରେ ମାଉସୀ ନିଜର ଗବେଷଣା କାର୍ଯ୍ୟ ଜାରି ରଖିଥିଲେ । ୧୯୯୨ - ୨୦୦୦ ଦୀର୍ଘ ଆଠ ବର୍ଷ କାଳ ସେ ଅରଣ୍ୟ ସମ୍ବନ୍ଧରେ ଜନଜାତିଙ୍କର ଦେଶୀୟ ଜ୍ଞାନ ଉପରେ ଗବେଷଣା ଚଳାଇ ରଖିଲେ । ଏହି ଗବେଷଣାରେ ସହଭାଗିତା କରିଥିଲେ - Chair of Forest Policy of Forest Economics, Swiss Federal Institute of Technology; the Deutch Gesllschaft fur Techniscehe Zusammemrbeit (GTH) ଓ Council of Cultural Growth and Cultural Relations (CCGR) । ଏହି ସୁଦୀର୍ଘ ଗବେଷଣାର କଷ୍ଟଲବ୍ଧ ଫଳ ଥିଲା କମଳ ମାଉସୀଙ୍କ ଲିଖିତ ବିରଳ ତଥ୍ୟ-ସମ୍ବଳିତ ପୁସ୍ତକ 'Man in Forest' । ଗବେଷଣା କରିବା ଓ ବହି ଲେଖିବା ମାଉସୀଙ୍କର ନିଶା ଥିଲା । ସେ ଏଥିରେ ଥକି ପଡୁନଥିଲେ । ଏହାପରେ ସେ ଲେଖିବାକୁ ଆରମ୍ଭ କଲେ - 'ବୃକ୍ଷଲତାର ଔଷଧୀୟ ଗୁଣ' । ପାଖାପାଖି ତିନିଶହ ଔଷଧୀୟ ଗୁଣଯୁକ୍ତ ବୃକ୍ଷଲତା ଉପରେ ନିରନ୍ତର ଗବେଷଣା ଚଳାଇ ସେ ଉକ୍ତ ପୁସ୍ତକଟିକୁ ଓଡ଼ିଆଭାଷାରେ ତିନୋଟି ଭାଗରେ ପ୍ରକାଶ କଲେ । ଏହା ଅତ୍ୟନ୍ତ ଆଦୃତ ହେଲା ।



ମାଉସୀ ଅନନ୍ତମୂଳ ନାମକ ଔଷଧୀୟ ଗୁଳ୍ମରୁ ଶ୍ୱାସରୋଗରେ ପ୍ରଭାବଶାଳୀ ଔଷଧ ତିଆରି କରିବାରେ ସଫଳ ହୋଇଥିଲେ । ଏଥିପାଇଁ ଅନେକ ପୁରୁଣା ଶ୍ୱାସରୋଗୀ ତାଙ୍କ ପାଖରୁ ଔଷଧ ଓ ସେ ସଂକ୍ରାନ୍ତ ପରାମର୍ଶ ନେବାପାଇଁ ତାଙ୍କ କ୍ୱାର୍ଟର୍ସ ଆଗରେ ଭିଡ଼ ଜମାଉଥିଲେ । ମାଉସୀ ଏହି ସେବା ନିଃଶୁଳ୍କ ପ୍ରଦାନ କରି ଚରମ ତୃପ୍ତି ଅନୁଭବ କରୁଥିଲେ ।

ସମୟ ବହି ଚାଲିଥାଏ । ଆମେ ସବୁ ଜୀବନ ସଂଗ୍ରାମରେ ଅସ୍ତବ୍ୟସ୍ତ ଅବସ୍ଥାରେ ଥାଉ । ସେ ଅବସ୍ଥା କବି ମାୟାଧର ମାନସିଂହଙ୍କର ନିମ୍ନୋକ୍ତ ସ୍ମୃତି-ଚାରଣରେ ପ୍ରତିଫଳିତ – "ଜୀବନ ସଂଗ୍ରାମର ତାଡ଼ନାରେ ବନ୍ଧୁମାନେ ଏ ଦେଶ ଓ ଏ ଦେଶ ବାହାରେ କାହିଁ କାହିଁ ନିକ୍ଷିପ୍ତ । ପ୍ରତ୍ୟେକର ଜୀବନ ଏପରି ଆତ୍ମକୈନ୍ଦ୍ରିକ ହୋଇଯାଇଛି ଯେ ଦେଶର କଥା ଦୂରେଥାଉ, ପରସ୍ପରକୁ 'କିପରି ଅଛ' ବୋଲି ପଚାରିବାର ପ୍ରବୃତ୍ତି କାହାରି ନାହିଁ । ଏହି ଅବସ୍ଥାରେ ୨୦୦୭ ମସିହାରେ ମୋର ବାପାଙ୍କର ଅକସ୍ମାତ ଦେହାନ୍ତ ହୋଇଗଲା । ସେ ଗିରିଜା ମଉସାଙ୍କ ଠାରୁ ପ୍ରାୟ ସାତ ବର୍ଷ ସାନଥିଲେ । ଗିରିଜା ମଉସା ଲେଖିଥିବା ସ୍ମୃତି – ଚାରଣରୁ ଜାଣିଲି ଯେ ସେମାନେ ରେଭେନ୍ସାରେ ପଢୁଥିବା ସମୟରୁ ତାଙ୍କ ମଧ୍ୟରେ ସମ୍ପର୍କର ସେତୁ ଗଢ଼ି ଉଠିଥିଲା ଓ ସେ ସମ୍ପର୍କ ଅତି ନିବିଡ଼ ଥିଲା ।

ଭାଇମାନେ ବାହାରେ ବସବାସ କରୁଥିବାରୁ ବାପାଙ୍କର ଦେହାନ୍ତ ପରେ ଘରର ଅଧିକାଂଶ ଦାୟିତ୍ୱ ମୋ' ଉପରେ ପଡ଼ିଲା ଓ ପରିସ୍ଥିତିର ଚାପରେ ମୁଁ ଏକ ପ୍ରକାର ନଇଁ ପଡ଼ିଲି । ଘର ଓ ଚାକିରି, ଉଭୟକୁ ସମ୍ଭାଳିବା ମୋ' ପକ୍ଷରେ କାଠିକର ପାଠ ହୋଇପଡ଼ିଲା । ଏହି ସମୟରେ ମୋର ବଦଳି (୨୦୧୧ ମସିହା) ଅନୁଗୋଳକୁ ହୋଇଗଲା । ପରିବାର ଛାଡ଼ି ମୋତେ ଏକୁଟିଆ ଅନୁଗୋଳ ଯିବାକୁ ପଡ଼ିଲା । ମୋର ପାରିବାରିକ ଅବସ୍ଥା ବିପର୍ଯ୍ୟସ୍ତ ହୋଇପଡ଼ିଲା । ବ୍ୟାପ୍ତି ସହିତ ମୁଁ ଆଉ ନିୟମିତ ଯୋଗାଯୋଗରେ ରହିପାରିଲି ନାହିଁ । କିନ୍ତୁ ମୁଁ ଶୁଣୁଥିଲି ଯେ ବୟସାଧିକ୍ୟ ହେତୁ ମଉସା – ମାଉସୀଙ୍କ ଦେହ ଭଲ ରହୁନଥାଏ ଓ ବ୍ୟାପ୍ତି ପ୍ରାୟ ସମସ୍ତ ଦାୟିତ୍ୱ ବହନ କରୁଥାଏ କାରଣ ତା'ର ଏକମାତ୍ର ଭାଇ (ଅଭିଜିତ୍ ଭାଇ) ଦିଲ୍ଲୀରେ ରହୁଥାନ୍ତି । (ବିବାହିତା) ଭଉଣୀ ପ୍ରଜ୍ଞା ଅପା ତାଙ୍କ ପରିବାର ସହ କେତେବେଳେ ଭୁବନେଶ୍ୱର ତ କେତେବେଳେ ଅନୁଗୋଳରେ ରହୁଥାନ୍ତି । ସମୟ ପାଇଲେ ସେମାନେ ଆସୁଥାନ୍ତି; କିନ୍ତୁ ଦୈନନ୍ଦିନର ଯାବତୀୟ ଦାୟିତ୍ୱ ବ୍ୟାପ୍ତିକୁ ତୁଲାଇବାକୁ ପଡୁଥାଏ । ସମୟ ପାଇଲେ ସେମାନେ ଆସୁଥାନ୍ତି, କିନ୍ତୁ ଦୈନନ୍ଦିନର ଯାବତୀୟ ଦାୟିତ୍ୱ ବ୍ୟାପ୍ତିକୁ ତୁଲାଇବାକୁ ପଡୁଥାଏ । କଦବା-କ୍ୱଚିତ୍ ସମୟ-ସୁବିଧା ମିଳିଲେ ମୁଁ ବ୍ୟାପ୍ତିକୁ ଦେଖାକରେ । ମୋତେ ଲାଗେ ସେ ମଧ୍ୟ ଗୁରୁଦାୟିତ୍ୱର ଭାରରେ ନଇଁପଡ଼ିଛି । ପିଲାଦିନେ ଆମେ ଶ୍ରବଣ କୁମାରର ଉପାଖ୍ୟାନ ପଢ଼ିଥିଲୁ । କିନ୍ତୁ ବାସ୍ତବ ଦୁନିଆରେ ବ୍ୟାପ୍ତିଠାରେ ଶ୍ରବଣ କୁମାରର ଚରିତ୍ର ମୁଁ ପ୍ରତ୍ୟକ୍ଷ ଦେଖିଲି । ମାତାପିତାଙ୍କ ସେବାରେ ଏତେ ତ୍ୟାଗ, ଧୈର୍ଯ୍ୟ ଓ ସହିଷ୍ଣୁତା ମୁଁ ଅନ୍ୟ କେଉଁଠାରେ ଦେଖିନାହିଁ । ତୈତ୍ତିରୀୟ ଉପନିଷଦରେ ଆମ ପ୍ରତି ଆଦେଶ – 'ମାତୃଦେବୋ ଭବ । ପିତୃଦେବୋ ଭବ ।' ଏହି ପରମ





ଆଦେଶର ଯଥାର୍ଥ ପାଳନ ମୁଁ ବ୍ୟାପ୍ତିଠାରେ ଦେଖିଛି, ଯାହାକି ଅଧୁନା ଅତି ବିରଳ । ସମ୍ଭବତଃ ଅହୋରାତ୍ର ମାତାପିତାଙ୍କର ସେବାରେ ବ୍ୟାପୃତ ରହିବାର ସଂକଳ୍ପ ବ୍ୟାପ୍ତିର ଅବିବାହିତ ରହିବାର ରହସ୍ୟ । ସେ ଏପରି ଦାୟବଦ୍ଧ ଥିଲା ଯେ ଘରୁ ଗୋଡ଼କାଢ଼ି ବାହାରକୁ ଯାଇପାରେ ନାହିଁ । ପର୍ଯ୍ୟଟନ ବା ଭ୍ରମଣ କରିବା ତ ଦୂରକଥା, ବର୍ଷ ବର୍ଷ ଧରି ସେ ସାଙ୍ଗସାଥି ଓ ବନ୍ଧୁବାନ୍ଧବଙ୍କର ବିଭିନ୍ନ ଉତ୍ସବ, ମିଳନ ପର୍ବ (get-together), ବିଭାଘର, ବ୍ରତଘର ବା ଶୁଦ୍ଧଘରରେ ଯୋଗଦେଇ ପାରୁନଥିଲା ।

ଏହିପରି ସେବାଯତ୍ନ ମଧ୍ୟରେ ପ୍ରାୟ ୪ (ଚାରି) ବର୍ଷ ତଳେ ଗିରିଜା ମଉସାଙ୍କର ଦେହାନ୍ତ ଘଟିଲା । ସେତେବେଳକୁ କମଳ ମାଉସୀ ଶଯ୍ୟାଶାୟୀ । ଏହି ୪ (ଚାରି) ବର୍ଷ ମଧ୍ୟ ବ୍ୟାପ୍ତି ପାଇଁ କଠିନ ପରୀକ୍ଷାର ସମୟ ଥିଲା । ମାଉସୀ ସମ୍ପୂର୍ଣ୍ଣ ଶଯ୍ୟାଶାୟୀ । ଦୈନନ୍ଦିନର ପରିଚର୍ଯ୍ୟା ମଧ୍ୟ କରିବାକୁ ଅକ୍ଷମ । ପାରକିନସନ୍ ରୋଗରେ ଆକ୍ରାନ୍ତ ହେବାଯୋଗୁ ଅଧିକାଂଶ ସମୟ ଔଷଧ ସେବନ କରି ନିଦ୍ରିତ ଅବସ୍ଥାରେ ରହୁଥାନ୍ତି । ବ୍ୟାପ୍ତି ଦିନରାତି ତାଙ୍କର ସେବାରେ ଥାଏ । ଯା' ମଧ୍ୟରେ ବ୍ୟାପ୍ତିର ଭିଣୋଇ (୰ ବିଶ୍ୱଜିତ ମିଶ୍ର)ଙ୍କର ଦେହ ଖରାପ ହେଲା । ସେ ଅତ୍ୟନ୍ତ ଅମାୟିକ ଓ ମିଷ୍ଟଭାଷୀ ବ୍ୟକ୍ତି ଥିଲେ । ଅନୁଗୋଳରେ ରହଣି ସମୟରେ ମୁଁ ତାଙ୍କୁ ଭେଟିଛି । ପ୍ରାୟ ବର୍ଷେ ତଳେ ବିଶ୍ୱଜିତ ଭାଇଙ୍କର ଅକାଳ ବିୟୋଗ ଘଟିଲା । ଏହା ସମସ୍ତଙ୍କ ପାଇଁ ବିଶେଷତଃ ପରିବାର - ପରିଜନଙ୍କ ପାଇଁ ଏକ ମର୍ମନ୍ତୁଦ ଘଟଣା ଥିଲା । ଏକାଦଶାହର ପଂକ୍ତିଭୋଜନ ଭୁବନେଶ୍ୱରରେ ହୋଇଥିଲା । ଏଥିରେ ଆମେମାନେ ଯୋଗ ଦେଇଥିଲୁ, କିନ୍ତୁ ବ୍ୟାପ୍ତି ଯୋଗଦେଇ ପାରିନଥିଲା, କାରଣ ମାଉସୀଙ୍କୁ ଛାଡ଼ି ସେ କେଉଁଆଡ଼େ ଯିବା ପାଇଁ ସକ୍ଷମ ନଥିଲା ।

ଶ୍ରୀଅରବିନ୍ଦଙ୍କ ମତରେ ମନୁଷ୍ୟର ଆତ୍ମା ନିତ୍ୟ-ବିବର୍ତ୍ତନଶୀଳ । ଯେତେବେଳେ ଆତ୍ମା ଉପଲବ୍ଧି କରିବାକୁ ଲାଗେ ଯେ ଜରାଜୀର୍ଣ୍ଣ ଅଥବା ରୋଗଗ୍ରସ୍ତ ହୋଇଥିବା ହେତୁ ଶରୀର ଆଉ ତା'ର ବିବର୍ତ୍ତନ ପ୍ରକ୍ରିୟାରେ ସମୁଚିତ ଯୋଗଦାନ କରି ପାରୁନାହିଁ, ସେତେବେଳେ ସେ ଉକ୍ତ ଶରୀର ପରିତ୍ୟାଗ କରିଥାଏ । ଶ୍ରୀମଦ୍ ଭଗବତ୍ ଗୀତାରେ ଏହି ମର୍ମରେ ଭଗବାନ କହିଛନ୍ତି -

ବାସାଂସି ଜୀର୍ଣ୍ଣାନି ଯଥା ବିହାୟ
ନବାନି ଗୃହ୍ଣାତି ନରୋପରାଣି ।
ତଥା ଶରୀରାଣି ବିହାୟ ଜୀର୍ଣ୍ଣା-
ନ୍ୟନ୍ୟାନି ସଂଯାତି ନବାନି ଦେହି ॥

- ଶ୍ରୀମଦ୍ ଭଗବତ୍ ଗୀତା, ଦ୍ୱିତୀୟ ଅଧ୍ୟାୟ, ୨୨ ଶ୍ଲୋକ

ମାଉସୀ ସାରାଜୀବନ ଅନୁସନ୍ଧିତ୍ସା ଓ ପରୋପକାରରେ କଟାଇଥିଲେ । ଏ ପ୍ରକାର ବ୍ୟକ୍ତିତ୍ୱ ଜରାଗ୍ରସ୍ତ ହୋଇ ଶଯ୍ୟାଶାୟୀ ହୋଇ ରହିବା ପାଇଁ କ'ଣ କେବେ ପସନ୍ଦ କରିବ ? ଦ୍ୱିତୀୟତଃ ପୁଅ (ବ୍ୟାପ୍ତି)ର କଷ୍ଟ



ସେ ସହିପାରୁ ନଥିଲେ । ସେ ଏହି ମରଶରୀରରୁ ଅପସରି ଯିବାକୁ ନିଜକୁ ପ୍ରସ୍ତୁତ କରୁଥିଲେ । ତା ୧୭.୧୨.୨୦୧୯ ରିଖ ଦିନ ସେ ନିଜ ନିଷ୍ପତ୍ତିକୁ କାର୍ଯ୍ୟକାରୀ କଲେ । ଦିବସ ସମୟରେ ପୁତ୍ର (ବ୍ୟାପ୍ତି) କନ୍ୟା (ପ୍ରଜ୍ଞା ଅପା) ପରିବେଷ୍ଟିତ ଅବସ୍ଥାରେ ସେ ନିଜ ମରଶରୀରରୁ ଅପସରିଗଲେ । ଏକ ଯୁଗର ଅବସାନ ଘଟିଲା ।

କମଳ ମାଉସୀଙ୍କ ଦେହାବସାନରେ ମୋ' ମନରେ ଯେଉଁ ଭାବର ଉଦ୍ରେକ ହେଉଛି, ତାକୁ ମୁଁ ମୋ' ବୋଉ (mother)ର ଭାଷାରେ ପ୍ରକାଶ କରୁଛି - "ସୂର୍ଯ୍ୟୋଦୟ ସର୍ବଦା ସ୍ୱାଗତଯୋଗ୍ୟ । ମାତ୍ର ସୂର୍ଯ୍ୟାସ୍ତ ଯୁଗେ ଯୁଗେ ତାତ୍ପର୍ଯ୍ୟପୂର୍ଣ୍ଣ । ଦିଗ୍-ବଳୟରେ ବୁଡ଼ିଯାଉଥିବା ସୂର୍ଯ୍ୟର ରକ୍ତିମଆଭା ସମଗ୍ର ଆକାଶକୁ ଉଦ୍-ଭାସିତ କରେ । ସାରାଦିନର ଭାବ ଆଦାନ-ପ୍ରଦାନର ଆତ୍ମୀୟତାର ବାର୍ତ୍ତା ଝରି ପଡୁଥାଏ ସେ ଆଭାରୁ । ଏ ସୁନ୍ଦର ଧରଣୀ, ଚିନ୍ମୟୀ ପ୍ରକୃତିର ମୋହ ବିଦାୟ ସୂର୍ଯ୍ୟକୁ ଅବଶ କରେ ନିଶ୍ଚୟ । ମାତ୍ର ତାହା କ୍ଷଣକ ପାଇଁ । ପ୍ରଜ୍ଞାଦୀପ୍ତ ଆଭା ତା'ର ଦିଗ୍‌ବଳୟ ତଳେ କ୍ରମଶଃ ଲୀନ ହୋଇଯାଏ । ସମୟର ଇତିହାସରେ ଯୋଡ଼ି ହୋଇଯାଏ ଗୋଟିଏ ଦିନର କ୍ଷୁଦ୍ର ଅଧ୍ୟାୟ ।" ('ଶେଷ ପାହାଚ' କବିତା ସଂକଳନରେ ବୋଉର ଆତ୍ମନେପଦୀ)

ମାଉସୀଙ୍କ ଜନ୍ମ ୧୯୩୬ ମସିହା ଜାନୁୟାରୀ ମାସ ୯ ତାରିଖ, ଅର୍ଥାତ୍ ସ୍ୱାଧୀନତା ପୂର୍ବରୁ । ଦେଶ ସ୍ୱାଧୀନତା ପାଇଲା ବେଳକୁ ମାଉସୀଙ୍କୁ ପାଖାପାଖି ବାର ବର୍ଷ । ହେତୁ ପାଇଲା ବେଳକୁ ଗାନ୍ଧିଜୀ, ସର୍ଦ୍ଦାର ପଟେଲ, ନେହେରୁ ଆଦି ଜୀବିତ ଥିଲେ । ଓଡ଼ିଶାରେ ପଣ୍ଡିତ ନୀଳକଣ୍ଠ ଦାସ, ଆଚାର୍ଯ୍ୟ ହରିହର ଦାସ, ପଣ୍ଡିତ ଗୋଦାବରୀଶ ମିଶ୍ର, ରମାଦେବୀ ଆଦିଙ୍କ କର୍ମମୟ ଜୀବନ ସେତେବେଳକୁ ଚାଲିଥିଲା । ସ୍ୱାଧୀନତା ସଂଗ୍ରାମରେ ପ୍ରତ୍ୟକ୍ଷ ଜଡ଼ିତ ଥିବା ଅନେକ ସୂରୀ ସେତେବେଳକୁ ଜୀବିତ ଥିଲେ । ଏହି ପ୍ରକାର ପରିବେଶରେ କମଳ ମାଉସୀଙ୍କ ଆଦ୍ୟ ଜୀବନ ଗଠିତ ହୋଇଥିଲା । ତେଣୁ ସ୍ୱାଭାବିକ ଭାବେ ତ୍ୟାଗ, ସାଧନା ଓ ପବିତ୍ରତାର ସଂସ୍କାର ତାଙ୍କ ମଧ୍ୟରେ ବଦ୍ଧମୂଳ ହୋଇଥିଲା । ସେ ଏଭଳି ଏକ ପିଢ଼ିର ସୁଯୋଗ୍ୟ ପ୍ରତିନିଧି ଥିଲେ, ଯାହାଙ୍କ ବିଷୟରେ ଆଜିର ପିଢ଼ିର ସମ୍ୟକ ଧାରଣା ଥାଇ ନପାରେ । ସେବର ପିଢ଼ି ଓ ଆଜିର ପିଢ଼ି ମଧ୍ୟରେ ସମୟକ୍ରମେ ସୃଷ୍ଟି ହୋଇଯାଇଥିବା ପ୍ରକାଣ୍ଡ ଖାଇକୁ ବର୍ଣ୍ଣନା କରିବାକୁ ଯାଇ ଆମ ସମୟର ବିଶିଷ୍ଟ ଚିନ୍ତାନାୟକ ହୃଦାନନ୍ଦ ରାୟ କହିଛନ୍ତି - "ଲାଲ୍ ବାହାଦୂର ଶାସ୍ତ୍ରୀ ଚାଲିଗଲେ ଖାଲି ଜଣେ ବ୍ୟକ୍ତି ଭାବରେ ନୁହେଁ, ଗୋଟାଏ ଆଦର୍ଶବାଦ ଓ ମୂଲ୍ୟବୋଧର ଶେଷ ବ୍ୟକ୍ତି ହୋଇ ଯେମିତି ଗୋଟେ ଲମ୍ବା ରେଳଗାଡ଼ିର ଗାର୍ଡ଼ ଡବା ତା'ର ଶେଷ ଆଲୋକ ଦିଗ୍-ବଳୟରେ ହଜି ହଜି ଯାଏ । ଭବିତବ୍ୟତାର ଇଞ୍ଜିନ୍ ଟାଣୁଛି, ଅଣାୟ ରେ ଗାର୍ଡ଼ ଡବା ଧାଇଁଛି । ଓଡ଼ିଶାରେ ନବକୃଷ୍ଣ ଚୌଧୁରୀ ଚାଲି ଯାଇଥିଲେ । ତାଙ୍କ ସହିତ ଗୋଟାଏ ଯୁଗର ଅବସାନ ହୋଇଯାଇଥିଲା । ତାଙ୍କ ପରଠାରୁ ସେ ରାଜନୀତି ଭିନ୍ନ ମୋଡ଼ ନେଲା, ବହୁ ବିଚିତ୍ର ମୂଲ୍ୟବୋଧର ଉଦୟ ହେଲା, ତାହା ଓଡ଼ିଶାର ଲୋକେ ଜାଣନ୍ତି । ଜଣେ ତରୁଣ ବିଧାୟକ ମୋତେ କହିଲେ ସାର୍ !



କଲେଜ ପଢ଼ିବା ଅବସ୍ଥାରେ ମୋର ଆକାଂକ୍ଷା ଥିଲା ମୋତେ କିପରି ପା  ଜଣ ଜାଣିବେ । ପରବର୍ତ୍ତୀ ଭାବନା ହେଲା ମୁଁ କିପରି ପାଂଚଜଣଙ୍କ ସେବା କରିପାରିବି, ତାଙ୍କୁ ସାହାଯ୍ୟ କରିପାରିବି । ଏଥିପାଇଁ ମୁଁ ରାଜନୀତିରେ ଯୋଗଦେଲି । ତିନି ତିନିଟା ନିର୍ବାଚନ ଜିଣିବା ପରେ ମୁଁ ଆଜି ଅନୁଭବ କରୁଛି, ଧନ ହିଁ ଶକ୍ତି ଓ ଶକ୍ତି ହିଁ ଧନ । ଧନ ଉପାର୍ଜ୍ଜନ କରିବାକୁ ଯେତେ - ଶକ୍ତି କ୍ଷୟ କରିବାକୁ ପଡୁଛି, ସେବା ପାଇଁ ଆଉ ସମୟ କାହିଁ କିମ୍ବା ମନୋବଳ କାହିଁ ? ଯେଉଁ ଆଶା ଆକାଂକ୍ଷାରେ ମୁଁ ରାଜନୀତିରେ ପଶିଲି, ଅର୍ଦ୍ଧପଥ ନ ଯାଉଣୁ ମୁଁ ଅନୁଭବ କରୁଛି ସେ ଯେ ଆଶା ଆକାଂକ୍ଷା ରକ୍ଷା କରିପାରିବା ମୋ' ହାତରେ ନାହିଁ । ମୁଁ ମୋ ଗୋଡ଼ରେ ଚାଲୁନାହିଁ, ମୋ' ହାତରେ କାମ କରୁନାହିଁ କିମ୍ବା ମୋ' ତୁଣ୍ଡରେ ମଧ୍ଯ ମୁଁ କଥା କହୁନାହିଁ । ଆଗକୁ ଯିବାକୁ ବାଟ ନାହିଁ, ପଛକୁ ଫେରିବାକୁ ବାଟ ନାହିଁ । ଏ ଗୋଟିଏ ବିସ୍ମୟକର ଭାସମାନ ଅବସ୍ଥା । ଆକାଶର ମେଘଖଣ୍ଡ ପରି ମୁଁ ଭାସି ଚାଲିଛି । ଏ ଜଣେ ବ୍ୟକ୍ତିର ଜୀବନ ପ୍ରତି ମନ୍ତବ୍ୟ ନୁହେଁ, ଏହା ଏହି ସମୟର ଗମ୍ଭୀର ଅନ୍ତର୍ଲିପି ।"

କମଳ ମାଉସୀ ଓ ତାଙ୍କ ସମୟର ମୂଲ୍ୟବୋଧ ଏହିପରି ହଜି ନଯାଉ । ମୂଲ୍ୟବୋଧ ହଜାଇଲେ ବହୁ ମୂଲ୍ୟ ଦେବାକୁ ପଡ଼ିପାରେ । ତାଙ୍କ ମରଶରୀର ପଂଚଭୂତରେ ବିଲୀନ । କିନ୍ତୁ ତାଙ୍କର ସୂକ୍ଷ୍ମ ସତ୍ତା । ଆମ ସହିତ ରହିଛି ଓ ଆମକୁ ମାର୍ଗଦର୍ଶନ ପାଇଁ ସଦା ତତ୍ପର । ଏହି ପବିତ୍ର ଦ୍ୱାଦଶାହ ତିଥିରେ ତାଙ୍କ ପ୍ରତି ମୋର ବିନମ୍ର ଶ୍ରଦ୍ଧାଞ୍ଜଳି ।

◆◆◆





# କମଳ ଅପା ! ସ୍ମୃତି ତର୍ପଣ !

ମନୋରମା ମହାପାତ୍ର

ଜୀବନର ସନ୍ଧ୍ୟାକ୍ଷଣରେ ଅନ୍ତରଙ୍ଗମାନଙ୍କୁ ହରାଇବାର ସମ୍ବାଦ ପାଇଲେ ବାର୍ଦ୍ଧକ୍ୟରେ ଭାରାକ୍ରାନ୍ତ ଚିତ୍ତ ଅଥୟ ହୁଏ । ଭୁଲି ହୋଇଯାଏ ଯେ ବୟସ ଅଧିକ ହେଲେ ଆମେ ସମସ୍ତେ ଜଣ ଜଣହୋଇ ଆଖି ବୁଜିଦେବା ସବୁଦିନ ପାଇଁ । ଖାଲି ଉଚ୍ଛନ୍ନ, ବିବ୍ରତ, ବିଚଳିତ ଲାଗେ, ମନେ ପଡ଼ିଯାଏ ପଛକଥା ସବୁ - ସ୍ମୃତି - ଅଜସ୍ର ସ୍ମୃତି - ଆଖିଆଗରେ ଭାସିଯାଏ ଅତୀତ ଗୋଟି ଗୋଟି କରି । କେତେ ପୁରୁଣା ଅଥଚ କେତେ ସତେଜ ସେ ସ୍ମୃତି ସବୁ । କେତେ ମନୋହରଣ ପୁଣି କେତେ ପ୍ରାଣସ୍ପର୍ଶୀ କଥାର ସମ୍ଭାର । ସେଦିନ ଖବର କାଗଜ ପୃଷ୍ଠାରେ ଦେଖିଲି - ପ୍ରଫେସର କମଳ ପଟ୍ଟନାୟକଙ୍କ ପରଲୋକ । ଆଗରୁ ତାଙ୍କ ଜୀବନସାଥୀ ବିଶିଷ୍ଟ ସମାଜସେବୀ, ସାରସ୍ୱତ ସାଧକ, ଗିରିଜା ଭାଇ ଏ ସଂସାରରୁ ବିଦାୟ ନେଇଛନ୍ତି । ତା'ପରେ କମଳ ଅପା ଆଉ କିଛି ଜାଣିପାରିବା ଅବସ୍ଥାରେ ପ୍ରାୟ ନଥିଲେ । ଉଭୟଙ୍କ ଭଲପାଇବା ଶେଷକ୍ଷଣ ଯାଏ ଅତି ନିବିଡ଼ଥିଲା - ସମସ୍ତଙ୍କୁ ଦୁହେଁ ଆପଣାର କରିପାରୁଥିଲେ ଅବା । ଇଉନିଭର୍ସିର ସ୍ରଷ୍ଟା ଗୋଟାଯାକ ପୃଥିବୀକୁ ସ୍ନେହରେ ବାନ୍ଧି ରଖିବାର ପ୍ରୟାସ କରିଥିଲେ । କେତେ ଇତିହାସ ଉନ୍ମୋଚିତ ହେଉଥିଲା । ସେତେବେଳେ ବାବୁଜୀ ଥିଲେ ପଦ୍ମଭୂଷଣ ଡଃ ରାଧାନାଥ ରଥ - ସମାଜ ସମ୍ପାଦକ ଏବଂ ଇଉନିଭର୍ସିର ଏକାନ୍ତ ଆପଣାର - ପୁତ୍ରପରି ଭଲପାଉଥିଲେ ଏହି ପ୍ରତିଭାଦୀପ୍ତ ସଂଗ୍ରାମୀ ମଣିଷ ଗିରିଜା ବାବୁଙ୍କୁ । ଆଉ ଆପଣାର ରୂପଗୁଣରେ ସମସ୍ତଙ୍କ ମନ ଜିଣିବାକୁ ଏକାନ୍ତ ସମର୍ଥ । ତାଙ୍କର ସହଧର୍ମିଣୀ ମଧ କମଳାଙ୍କୁ ଝିଅଠୁ ଅଧିକ ସ୍ନେହ ଢାଳିଦେଉଥିଲେ ବାବୁଜୀ । ଅତୀତ କଥା । ସେଦିନ କଥା ଭାବିଲେ ଆଖିରୁ ଲୁହ ଝରେ ଆନନ୍ଦରେ - ଶୋକରେ, ଭାବପ୍ରବଣତାରେ । ଯାହା ଅଶିବର୍ଷ ଅତିକ୍ରମ କରିଥିବା ଭାବପ୍ରବଣ ମହିଳାଟି ପକ୍ଷରେ ଏକାନ୍ତ ସ୍ୱାଭାବିକ । ପ୍ରତିଦିନ ବାବୁଜୀ ସକାଳୁ ଫୋନ କରିବେ ଗିରିଜା ଭାଇଙ୍କୁ ନଚେତ୍ 'ମାଆ କମଳକୁ' । ମାଆ କମଳ ଛଡ଼ା ସେ କେବେ 'କମଳ' ବୋଲି ଡାକିବାର କେହି ଶୁଣିନାହୁଁ । ସ୍ନେହ ମମତାରେ ଭରପୂର ସଦା ଶାନ୍ତ । ବ୍ୟକ୍ତିତ୍ୱରେ ଝଲମଲ । ନ ଦେଖିଲେ ଆଖି ଫେରାଇ ହୁଏନାହିଁ । ସେ ଆମ ମ୍ୟାଡ଼ାମ୍ ଆମ କମଳ ଅପା । ଆଦର୍ଶ ଅଧ୍ୟାପିକା ମୋ' ଭାଗ୍ୟ ଯେ, ସିଏ ଥିଲେ ମୋର ଅଧ୍ୟାପିକା । ୧୯୬୩ ମସିହା କଥା । ଚାରୋଟି ପିଲାର ମାଆ ହୋଇ ମୁଁ ନାଁ ଲେଖାଇଲି ଶୈଳବାଳା ମହିଳା କଲେଜରେ ପ୍ରି. ଇଉନିଭରସିଟି ଥିଲା ସେତେବେଳେ । ସାଧାରଣ ଜ୍ଞାନ ଥିଲା ବାଧ୍ୟତାମୂଳକ ବିଷୟ । ସେଥିରେ ବିଜ୍ଞାନ ପଢ଼ାହେଉଥିଲା । ବଟାନି, ଫିଜିକ୍ସ, କେମେଷ୍ଟ୍ରି ପଢ଼ା ହେଉଥାଏ । ଡଃ କମଳ ପଟ୍ଟନାୟକ ଆମକୁ ବଟାନି ପଢ଼ାଉଥାନ୍ତି । ଫିଜିକ୍ସ ପଢ଼ାଉଥାନ୍ତି ପ୍ରିୟତମା ଦେଓ । ଏତେ ସୁନ୍ଦର ପଢ଼ାଇବାର ଶୈଳୀ ମୁଁ ଏକଦମ ମୁଗ୍ଧ । ସଦ୍ୟ ବିବାହିତା, ଅପୂର୍ବ ସୁନ୍ଦର ରୂପ - ପୁଣି ଜ୍ଞାନ ସାର ସିଏ । କି ସୁନ୍ଦର ତାଙ୍କ ଚେହେରା ଥିଲା ବୁଦ୍ଧିଦୀପ୍ତ



କାନ୍ତିମୟୀ ସମସ୍ତଙ୍କୁ ଆକର୍ଷଣ କଲାଭଳି ନରମ, ଶାନ୍ତ, ସ୍ନେହଭରା - ମନକୁ କିଣିନେଲା ଭଳି ବ୍ୟକ୍ତିତ୍ୱ । ସେତିକିବେଳୁ ମୁଁ ତାଙ୍କର ସ୍ତାବକ ହୋଇଗଲି । ମୁଁ ତାଙ୍କୁ ମ୍ୟାଡ଼ାମ୍ ଡାକିବାରେ ଅଭ୍ୟସ୍ତ ହୋଇଯାଇଥିଲି - ମୁଁ କମଳ ଅପାଙ୍କର ଏକପ୍ରକାର ଭକ୍ତ ହୋଇଗଲି କହିଲେ ଚଳେ । ସେ ମଧ୍ୟ ମତେ ନାଁ ଧରି ଡାକନ୍ତି - ଅବଶ୍ୟ ମୁଁ ତାଙ୍କଠାରୁ ବୟସରେ ବଡ଼ ଥିଲି । ତାଙ୍କର ସୁନ୍ଦର ଝିଅ ପ୍ରଜ୍ଞା ହେଲାପରେ ଆମେ ବେଶୀ ନିକଟତମ ହୋଇଗଲୁ । କାରଣ ମୋ' ବୋଉ ମଧ୍ୟ ମାଆ କମଳଙ୍କୁ ଭାରି ଭଲପାଏ । ପରିବାରର ଜଣେ ହୋଇଗଲେ କେମିତି କେଜାଣି କମଳ ଅପା - ଭଲ ପାଇବା ମଣିଷଟିଏ ସିଏ । ପୁଣି ମୁଁ ରେଭେନ୍ସାରେ ଅଧ୍ୟାପିକା ହେଲାପରେ ୧୯୭୦ରେ ତାଙ୍କ ସହ ବନ୍ଧୁତ୍ୱ ବଢ଼ିଲା । ହେଲେ ମୋ' ପାଇଁ କମଳ ମ୍ୟାଡ଼ାମ୍ - ଅତୁଳନୀୟ, ଅନନ୍ୟ । ରୂପ, ଗୁଣ, ବ୍ୟକ୍ତିତ୍ୱ, ଭଲପାଇବା, ସରଳତା ବନ୍ଧୁବତ୍ସଳତାର ମୂର୍ତ୍ତିମନ୍ତ ପ୍ରତୀକ । ମତେ ସେ ଛାତ୍ରୀପରି ସ୍ନେହ କରନ୍ତି । ମୁଁ କବିତା ଆବୃତ୍ତି କଲେ ତାଙ୍କୁ ଶୁଣିବାକୁ ଭଲଲାଗେ । ସେଥିଲାଗି ତାଙ୍କ ଅଗଣାରେ ବସି ମୁଁ କବିତା ଆବୃତି କରୁଥିଲି କମଳ ଅପାଙ୍କ ଦେହ ଖରାପ ହେଲା ପରେ - ସେ ମତେ କହନ୍ତି - ମନୋରମା - ଗଡ଼ନାୟକଙ୍କ କବିତା ଆବୃତି କର - ମତେ ଭଲ ଲାଗିବ । ନାନାପ୍ରକାର ଗଛ ବୃକ୍ଷରୁ ଔଷଧ ତିଆରି କରି ଲୋକଙ୍କୁ ଦେବା - ଔଷଧ ବୃକ୍ଷ ସମ୍ବନ୍ଧରେ 'ସମାଜ'ରେ ପ୍ରବନ୍ଧ ଲେଖିବା ତାଙ୍କର ଆଉ ଏକ ଜନହିତକର କାର୍ଯ୍ୟ ଥିଲା । ଗିରିଜା ଭାଇ ଆଉ କମଳ ଅପା - ଆଦର୍ଶ ପତିପତ୍ନୀ । ଅହଂକାର କମଳ ଅପାଙ୍କୁ ସ୍ପର୍ଶ କରି ନଥାଏ । ସଦାବେଳେ ଶାନ୍ତ, ସରଳ ହସ ହସ ମୁହଁ ବି ଆଖିଆଗରେ ମୋର ଭାସିଯାଉଛି । ସେ କାଳରେ ଉଚ୍ଚଶିକ୍ଷିତା ଅଧ୍ୟାପିକାଙ୍କ ସଂଖ୍ୟା କମ ଥିଲା - ମାତ୍ର ସେମାନଙ୍କ ଶିକ୍ଷା ଦେବା ପ୍ରଣାଳୀ, ଉଦାରତା, ନମ୍ରତା ଥିଲା ଅପୂର୍ବ । ବିଶେଷରେ କମଳ ଅପା - ବିରାଟ ମଣିଷ ବିଜୁ ବାବୁଙ୍କ ନିଜ ଭାଣିଜୀହୋଇ ମଧ୍ୟ ସବୁରି ସାଥିରେ ମିଶିଯାଆନ୍ତି । ଗିରିଜା ବାବୁଙ୍କ ପ୍ରତି ତାଙ୍କର ପ୍ରେମ ଯେତିକି ଗଭୀର - ସମ୍ମାନ ମଧ୍ୟ ଅନୁରୂପ ଭାବରେ ଶିକ୍ଷୟିତ୍ରୀ । ବି.ଏସ.ସି ପଢ଼ିଲାବେଳୁ ଉଭୟେ ସ୍ଥିର କରିଥିଲେ ବିବାହ ବନ୍ଧନରେ ବାନ୍ଧି ହେବାପାଇଁ । ଗିରିଜା ଭାଇଙ୍କ ପରି ଏତେ ଅଧିକ ପ୍ରତିଭାଦୀପ୍ତ ଏବଂ ସ୍ୱାଭିମାନୀ, ସଂଗ୍ରାମୀ ଜନସେବକଙ୍କ ପତ୍ନୀର ଦାୟିତ୍ୱ, କର୍ତ୍ତବ୍ୟ ଯେ କେତେ ଅଧିକ କୁହାଯାଇ ନପାରେ । କିନ୍ତୁ ପ୍ରେମିକା ପତ୍ନୀ କମଳ - ଜଣେ ଉପମାବିହୀନ ପ୍ରେମିକା ଓ ଦାୟିତ୍ୱ ସମ୍ପନ୍ନା ପତ୍ନୀ । ତାଙ୍କସହ ଯିଏ ମିଶିଛି ସେ ହିଁ ଜାଣେ କେତେ ପରିପୂର୍ଣ୍ଣ ତାଙ୍କର ବିବାହିତ  ଜୀବନ ।

ବିଚିତ୍ର ଏ ଦମ୍ପତ୍ତି । କମଳ ଅପା ପଢ଼ିଲା ବେଳକୁ ଗିରିଜା ବାବୁ ଓ କମଳ ଅପା ବାହା ହେବେ ବୋଲି ସ୍ଥିର କରି ସାରିଥିଲେ । ଅତ୍ୟନ୍ତ ମେଧାବିନୀ କମଳ କୁମାରୀ ୧୯୬୨ ବେଳକୁ ପ୍ରଥମ ଓଡ଼ିଆ ଝିଅ ଡକ୍ଟରେଟ କରି ସାରିଥିଲେ । ରେଭେନ୍ସାରେ ସେ ପ୍ରଫେସର ହେଲେ ଖୁବ୍ କମ୍ ବୟସରେ । ଉଭୟଙ୍କର ବୁଝାମଣା ଏତେ ଭଲ ଥିଲା କୁହା ନଯାଏ । ପିଲାଙ୍କ ନାମ ଦେଲେ ଗିରିଜା ଭାଇ ! ସବୁ ନୂଆ ଝିଅ ପ୍ରଜ୍ଞା, ଏଲିନାର ଭାଲେଣ୍ଟିନା, ଆଉ ବଡ଼ ପୁଅ - ଅଭିଜିତ୍ ଆଇନଷ୍ଟାଇନ୍ ଏବଂ ସବା ସାନପୁଅ - ବ୍ୟାପ୍ତି ଆଲବର୍ଟ ।







ସବୁ ବିଚିତ୍ର ଏଭଳି ଚିନ୍ତା ସୂଚାଇ ଦେଲା ଆଧୁନିକ ଦମ୍ପତିଙ୍କର ବୁଝାମଣା - ଥାଏ ଯଥାର୍ଥ ଆତ୍ମର ମିଳନ । ଗିରିଜା ଭାଇଙ୍କ ଆବୃତ୍ତି ଭାରି ଚମତ୍କାର । ମୁଁ ଭାବେ ବୋଧେ ତାଙ୍କର ଅସାଧାରଣ ବ୍ୟକ୍ତିତ୍ୱ ଏହି ବୁଦ୍ଧିମତୀ ସାହିତ୍ୟପ୍ରେମୀ ଧୀମୟୀ ଝିଅଟିକୁ ଅଭିଭୂତ କରିଥିଲା । ତେଣୁ ମୁଁ ଜୀବନର ଶେଷଯାଏଁ ଦୁହେଁ ଦୁହିଁଙ୍କର ପୂର୍ଣ୍ଣ ପରିପୂରକ ଥିଲେ । ମୁଁ ବେଳେବେଳେ ଭାବେ ଯଦି ଗିରିଜା ଭାଇ କମଳ ଅପାଙ୍କୁ ବାହାହୋଇ ନଥାନ୍ତେ ତେବେ ସେ କଦାପି ଏତେ ସମାଜସେବା ଜ୍ଞାନ ଚର୍ଚ୍ଚା, ସାରସ୍ୱତ କର୍ମ ସବୁ କରିପାରି ନଥାନ୍ତେ । କିନ୍ତୁ ଦିନେ କେହି କମଳ ଅପାଙ୍କଠାରୁ ଗିରିଜା ଭାଇଙ୍କ ବିରୋଧରେ ପଦେ ଶୁଣି ନଥିଲୁ । ବରଂ ତାଙ୍କ ପ୍ରଶଂସା ଶୁଣିଲେ ଏକ ମନୋମୁଗ୍ଧକର ବିମଳ ହସରେ ଉଲ୍ଲସି ଉଠେ କମଳ ଅପାଙ୍କର ସୁନ୍ଦର ମୁଖମଣ୍ଡଳ । "ଗିରିଜା ଭାଇଙ୍କ କଥା କାହିଁକି କହୁଛୁ - "ସେ ସବୁବେଳେ ସେମିତି - ଅସାଧାରଣ ସ୍ମରଣ ଶକ୍ତି ।" ମୁଁ ଭାବେ, ବୋଧେ ମୁଁ ମଧ ଭଲ କବିତା ମନେ ରଖି ଆବୃତ୍ତି କରିପାରେ ବୋଲି ମୋ' ମ୍ୟାଡ଼ମ୍ କମଳ ଅପା ମତେ ଏତେ ଭଲ ପାଆନ୍ତି । ଦିନକର କଥା । ସେତେବେଳକୁ ଗିରିଜା ଭାଇ ବିଛଣାରେ ଥାଆନ୍ତି ଅସୁସ୍ଥ । କମଳ ଅପା ମଧ ପୂର୍ଣ୍ଣ ସୁସ୍ଥ ନଥାନ୍ତି । ମୁଁ ଦେଖିବାକୁ ଯାଇଥାଏ । ମତେ ଆଶ୍ଚର୍ଯ୍ୟ କରି ହଠାତ୍ କମଳ ଅପା କହିଲେ - ଟିକେ ବସ ଆଉ କିଛି ବେଳ । କବିତାଟିଏ ଆବୃତ୍ତି କର । ଭଲଲାଗେ ତୁମ କବିତା ବୃତ୍ତି - ଅନେକଦିନ ଶୁଣି ନାହିଁ । ମୁଁ ଆବୃତ୍ତି କଲି ଗଡ଼ନାୟକଙ୍କର ଉଦ୍ଧାମ ସିଂ - କବିତାଟି ।

ଭାରି ଉଦାସ ଲାଗିଲା । ମତେ ତାଙ୍କର ରୋଗାକ୍ରାନ୍ତ ରୂପ ଦେଖି । ସେଦିନ ମନ ଦୁଃଖରେ ଫେରିଆସିଲି । ଘରକୁ ଆଉ ଗିରିଜା ଭାଇଙ୍କ ମହାପ୍ରୟାଣ ପରେ ? ନା - ସେ ଆଉ ଚାହୁଁ ନଥିଲେ ରହିବାକୁ ଗିରିଜା ଭାଇଙ୍କ ବିନା ଏଇ ଧରଣୀରେ । ସୁସ୍ପଷ୍ଟ ଭାବରେ ପ୍ରତିଭାତ ହେଉଥିଲା ତାଙ୍କ ଚେହେରାରୁ । ପରୋପକାରିଣୀ, ଆଦର୍ଶ ଅଧ୍ୟାପିକା, ଦୟାଳୁ, ପ୍ରଶାସିକା, ସ୍ନେହାସିକ୍ତ ବ୍ୟକ୍ତିତ୍ୱ, ସେ ଜଣେ ଆଦର୍ଶ ମାଆ । ନାରୀନେତ୍ରୀ ହେବାପାଇଁ କେବେ ମନ ବଳେଇ ନାହାନ୍ତି । ବହୁ ଉଚ୍ଚ ପଦବୀରେ ରହିଛନ୍ତି । କାମ କରିଛନ୍ତି । କିନ୍ତୁ ସେ ନିଷ୍ଠାପର ସର୍ବଜନପ୍ରିୟ ଶିକ୍ଷାଦାତ୍ରୀ ଭାବରେ । ଛାତ୍ରଛାତ୍ରୀଙ୍କଠୁ ଆରମ୍ଭ କରି ସାଧାରଣ ମଣିଷମାନଙ୍କ ମନ ଜାଣି ସେବା । ତାଙ୍କ ଘରେ ଥିବା ସେବକ ସେବିକାମାନେ କହନ୍ତି - ମାଆ ଆମର ଦୟାର ଅବତାର । ସେ ତ ଚାଲିଗଲେ, ରହିଗଲା ସ୍ମୃତି । କମଳ ଅପା - ତୁମ ଶବାଧାରରେ ମୁଁ ଠିଆହୋଇ ପାରିଲି ନାହିଁ । ମୋର ଦୁଃଖ ଓ ଅଭିମାନ ରହିଗଲା - ଆହା ମତେ ଜଣେ କେହି ଖବର ଦେଲେ ନାହିଁ । ମୋ' ବିଚାରରେ ସେ ଅନନ୍ୟା - ନାରୀ ଜାତିର ଗୌରବ । ବିଶେଷରେ କର୍ମଜୀବୀ, ଉଚ୍ଚଶିକ୍ଷିତା ମା', ପଦପଦବୀ ଧାରିଣୀ ମହିଳାମାନଙ୍କର ସେ ଆଦର୍ଶ ପୁଣି ଆଦର୍ଶ ଜନନୀ ପ୍ରଶାସିକା ଭାବରେ ତାଙ୍କର ଖ୍ୟାତି ରହିଛି ।

କମଳ ଅପା - ଆଜି ବି' ପଦ ଲେଖିଲାବେଳେ ମୋ' ଆଖି ଲୁହରେ ଭରିଯାଉଛି । ମୋ' ବିଚାରରେ ମୁଁ ଧନ୍ୟ ହୋଇଥିଲି ଏଭଳି ଅଧ୍ୟାପିକା ପାଇ । ଆଧୁନିକ ଉଚ୍ଚଶିକ୍ଷିତା, କର୍ମଜୀବୀ ପତ୍ନୀମାନଙ୍କ ପାଇଁ ଚିରକାଳ ତୁମେ ଯଥାର୍ଥ ଆଦର୍ଶହୋଇ ରହିଥିବ । ଅମଳୀନ ଭଲ ପାଇବାର ପ୍ରତୀକ ।





ଯଥାର୍ଥରେ ପୁଣ୍ୟାତ୍ମା ଗୋପବନ୍ଧୁ ଲେଖିଛନ୍ତି -

"ଅବନ୍ଧୁ ଜୀବନ ଅସୂର୍ଯ୍ୟ ମହୀ

ଦେହ ଧରି କେବା ପାରିବ ସହି ।"

ତୁମେ ଦୁଇଜଣ ଥିଲ ଯଥାର୍ଥ ବନ୍ଧୁ । ତୁମ ଜୀବନ ସାର୍ଥକ । ତୁମ ପିଲାମାନେ ଆଶୀର୍ବାଦ ପ୍ରାପ୍ତ ଧନ୍ୟ ।

ଚିତାତଳେ ଭସ୍ମ ନୁହେଁ ସେନେହ, ବନ୍ଧନ । ତୁମ ପିଲାମାନେ ଆଶୀର୍ବାଦପ୍ରାପ୍ତ ଧନ୍ୟ । ଶ୍ମଶାନ ନୁହେଁ ଏ ଜୀବ ଶେଷ ପରିସୀମା । କେବେ କାହିଁ ହେବ ନିଶ୍ଚେ ଶୁଭ ସମ୍ମେଳନ ପ୍ରକାଶିବ ପାଣେ ପୂର୍ଣ୍ଣ ପୁଣ୍ୟର ଗାରିମା ।

(ପୁଣ୍ୟାତ୍ମା - ଗୋପବନ୍ଧୁ ଦାସ)

ପ୍ରଭୁଙ୍କୁ ପ୍ରାର୍ଥନା - ଆମେ ତୁମ ଗୁଣ ସୁମରୁଥିବୁ । ଶୋକସନ୍ତପ୍ତ ତୁମ ପିଲାମାନଙ୍କୁ ସମବେଦନା ଜଣାଉଛି - ସବୁରି ମୁହଁରେ ପଦିଏ କଥା - ଆହା କେଡ଼େ ଭଲ ମଣିଷ ସେ ଥିଲେ ।

ସେହି ମହାନ୍ ଆତ୍ମା ଉଦ୍ଦେଶ୍ୟରେ ମୋର ଭକ୍ତିଭରା ପ୍ରଣାମ । ବିଦାୟ -

◆◆◆

# କମଳ ଅପା - କମଳ ପରି ସମସ୍ତଙ୍କର ପ୍ରିୟ ଓ ପୂଜ୍ୟା ଥିଲେ

**ପ୍ରଫେସର ଡାକ୍ତର କୃପାସିନ୍ଧୁ ପଣ୍ଡା**

କମଳ ଅପା ଆଜି ନାହାନ୍ତି । ଆମକୁ ବହୁତ ଭଲ ପାଉଥିଲେ । ୧୯୬୨ ମସିହାରୁ ଆମର ସହଧର୍ମିଣୀ ଅନ୍ନପୂର୍ଣ୍ଣା ଦେବୀଙ୍କୁ ଶୈଳବାଳା ମହିଳା କଲେଜରେ ଉଦ୍ଭିଦ ବିଜ୍ଞାନ ପଢ଼ାଉଥିଲେ । ଏବେ ବି କମଳ ଅପାଙ୍କ ଭଳି ମହାମାନବୀଙ୍କ କଥା ଆଲୋଚନା କଲେ ସ୍ୱତଃ ପ୍ରଣାମ ଚାଲିଆସେ । ସ୍ୱାମୀ ଶ୍ରୀଯୁକ୍ତ ଗୀରିଜା ଭୂଷଣ ପଟ୍ଟନାୟକ ଏକ ଭିନ୍ନ ଚିନ୍ତାର ଭିନ୍ନ ମାନର ମଣିଷ। କଟକରୁ ବିଶ୍ୱ ପରିବାର ୟୁନିଭର୍ସର ଡାକରା ଶ୍ରୀଯୁକ୍ତ ବିବେକାନନ୍ଦ, ପ୍ରାକ୍ତନ ରାଷ୍ଟ୍ରପତି କଲାମଙ୍କ ପରି ମହାମାନବଙ୍କ ପରି ବହୁତ ବଡ଼ ଚିନ୍ତା 'ବିଶ୍ୱ ପରିବାର'। ଯେତିକି ପାରିଲେ କରିପାରିଛନ୍ତି, କମଳ ଅପାଙ୍କର ଅପାର ସ୍ନେହ ଆମ ମାନଙ୍କ ଉପରେ ସଦାବେଳେ ରହିଆସିଛି। ଘରେ ଡାକି ଖୁଆଇବା, ଟିକେ ପାରିବାରିକ ଭଲମନ୍ଦ ସଙ୍ଗେ ସଙ୍ଗେ ଗଛ, ପତ୍ର, ମୂଳ, ଫଳ ଦ୍ୱାରା ରୋଗୀ ଚିକିତ୍ସା ତାଙ୍କ ମନରେ ସଦାବେଳେ ଥାଏ । ଯେତେହେଲେ ବି ଜଣେ ବୈଜ୍ଞାନିକ। ଆମକୁ ଡାକ୍ତରି ଚିକିତ୍ସାରେ ସେ ସବୁର ଉପକାର କଥା ପଚାରି ବୁଝନ୍ତି। ସଦାବିହାରି ପତ୍ର, ହିମାଳୟର ୩୦୦୦ ଫୁଟ ଉଚ୍ଚରେ ଥିବା ଗଛ ପତ୍ର ଓ ଗଣ୍ଡିରୁ ବିଭିନ୍ନ କ୍ୟାନସର ଔଷଧ ତିଆରି କରାଯାଉଛି, କାମ ବି କରୁଛି। ହଳଦୀର ବିଭିନ୍ନ ଉପକାରିତା ସମସ୍ତେ ଜାଣନ୍ତି। ଏବେ ବି 'କୀରକନ୍' ପ୍ରଭୃତି ଔଷଧ ତିଆରି ହେଉଛି । ଦାମ୍ ବି ବହୁତ ବେଶି । ତଥାପି ଡାକ୍ତରି ଚିକିତ୍ସାରେ ସ୍ଥାନ ପାଉଛି। ନିଜ ସ୍ୱାସ୍ଥ୍ୟ ସମସ୍ୟାକୁ ନେଇ ବହୁତ ବର୍ଷ ଭୋଗିଛନ୍ତି। ପିଲାମାନେ ବହୁତ ଯତ୍ନ ନେଉଛନ୍ତି । କେହି ବି ଅମର ରହିନାହାନ୍ତି। ସେ ତାଙ୍କ ଲୀଳା ସାରି ଚାଲିଗଲେ। ମୃତ୍ୟୁ ପରେ କ'ଣ ହୁଏ, କେହି ଜାଣିନାହାନ୍ତି, କଳ୍ପନା ମାତ୍ର। ତାଙ୍କର ଆତ୍ମା ଶାନ୍ତିରେ ରହୁ। ତାଙ୍କର ଆନ୍ତରିକ ବାର୍ତ୍ତା, ଆଶା ଓ କଳ୍ପନା ପାଇଁ ଆମେ କ'ଣ କରିବା - ସେ ହେଉ ଆଜିର ଡାକରା ଓ କଳ୍ପନା।

◆◆◆

# ନାରୀ ହିଁ ସଫଳତାର ଚାବିକାଠି

**ରାଧାମୋହନ ସାହୁ**

କଟକ ହେଉଛି ସଂସ୍କୃତିର ସହର । ଉତ୍କଳୀୟ ସଂସ୍କୃତି, କଳା, ଧର୍ମ ତଥା ଭାଇଚାରାର ସହର କଟକ । ଆଜିପରି ଦିନ ଥିଲା, ମାତ୍ର ହାତଗଣତି କେତୋଟି ସାଂସ୍କୃତିକ ବିଶ୍ୱ ସାମାଜିକ ଅନୁଷ୍ଠାନ । କଟକ ହେଉଛି ହଜାର ବର୍ଷର ସହର। ଏହା ବହୁ ବୁଦ୍ଧିଜୀବୀ, ଗବେଷକ, ପଣ୍ଡିତ ଓ ଜନସାଧାରଣଙ୍କୁ ପ୍ରାୟ ଅଜଣା ଥିଲା । କିନ୍ତୁ ସ୍ୱର୍ଗତ ଗିରିଜାଭୂଷଣ ପଟ୍ଟନାୟକ ଉଦ୍ୟମରେ । କଟକ ରାଷ୍ଟ୍ରଭାଷା ରୋଡ଼ସ୍ଥିତ ଏକ ଅନୁଷ୍ଠାନ The Univers ନାମରେ । ଗଠିତହୋଇ ଲକ୍ଷ ଲକ୍ଷ ଲୋକ ତଥା ଓଡ଼ିଶାବାସୀ ଏକ ସୂତ୍ରରେ ବାନ୍ଧି ରଖିବାରେ ସଫଳତା ଅର୍ଜନ କରେ । ଓଡ଼ିଶାକୁ ଜାତୀୟ ଓ ଆନ୍ତର୍ଜାତୀୟସ୍ତରକୁ ନେଲେ । ସଂସ୍କୃତିକୁ ପ୍ରଚାର ଓ ପ୍ରସାର କରାଇବାସହ ଅନୁଷ୍ଠାନ 'ଦି ୟୁନିଭର୍ସ' ରାସ୍ତାକୁ 'ମୈତ୍ରୀସରଣୀ' ନାମରେ ଯୋଡ଼ିଦେଇ କଟକ 'ବାଉନ ବଜାର, ତେପନ ଗଳି'ରେ ସାମିଲ କରି ଏକ ନବଦିଗନ୍ତ ସୃଷ୍ଟି କଲେ ।

'କଟକ ସହର ବରଷ ହଜାର' ଉତ୍ସବ ସମଗ୍ର ଦେଶବାସୀଙ୍କ ନିମନ୍ତେ ଥିଲା ଏକ ନବଜାଗରଣ ଓ ସ୍ମୃତି ସଂଗ୍ରହର ବେଳା । ସମସ୍ତଙ୍କ ମନରେ ଭରିଦେଇଥିଲା ପ୍ରେରଣାର ଉତ୍ସ ।

ସ୍ୱର୍ଗତ ଗିରିଜାଭୂଷଣ ପଟ୍ଟନାୟକଙ୍କ ତ୍ୟାଗ, ନିଷ୍ଠା ଓ ସେବା ନିମନ୍ତେ ତାଙ୍କର ଧର୍ମପତ୍ନୀ ଡକ୍ଟର ପ୍ରଫେସର କମଳ କୁମାରୀ ପଟ୍ଟନାୟକ ଯେଉଁ ସହଯୋଗର ହାତରେ ଉଭା ହୋଇଥିଲେ ତାହା ପ୍ରତ୍ୟେକ ଓଡ଼ିଆ ପ୍ରାଣରେ ଲିପିବଦ୍ଧହୋଇ ରହିଛି । ସେହି ମାତୃତୁଲ୍ୟ ମହିୟସୀ ମହିଳାଙ୍କୁ ସମସ୍ତେ ଶ୍ରଦ୍ଧାରେ ଡାକୁଥିଲେ 'କମଳ ଅପା' ।

କମଳ ଅପା ଥିଲେ ନାରୀଶକ୍ତିର ଜଣେ ଯୋଗଜନ୍ମା । କୁହାଯାଏ-ଜଣେ ପୁରୁଷର ସଫଳତାରେ ଏକ ନାରୀର ପ୍ରଚ୍ଛନ୍ନ ସହାୟତା । ଯାହା ଆଜି ଆମେ ସମସ୍ତେ ଅନୁଭବ କରିପାରୁଛୁ କି ସ୍ୱର୍ଗତ 'କମଳ ଅପା' ଗିରିଜା ବାବୁ ତାଙ୍କର ସ୍ୱପ୍ନକୁ ସାର୍ଥକ କରି 'The Universe'କୁ ଗଢ଼ି ତୋଳିବାର ସଫଳତା ହାସଲ କରିବା ସହ ଓଡ଼ିଶା ଓ ଓଡ଼ିଆ ଭାଷାକୁ ଆଜି ଆନ୍ତର୍ଜାତିକସ୍ତରରେ ଉପସ୍ଥାପିତ କରିପାରିଛନ୍ତି । ତେଣୁ ସ୍ୱର୍ଗତ କମଳ କୁମାରୀ ପଟ୍ଟନାୟକଙ୍କ ତ୍ୟାଗ, ନିଷ୍ଠା ଆଜି ଅବିସ୍ମରଣୀୟ।

ଯେଉଁ ସମୟରେ କଟକ କାହିଁକି ସାରା ଓଡ଼ିଶାର ବହୁ ଆଜମା ବା ଶ୍ୱାସରୋଗୀ ଆକ୍ରାନ୍ତହୋଇ ହନ୍ତସନ୍ତ ହେଉଥିଲେ, ସେ ସମୟରେ କମଳ ଅପା କେତେକ ବୃକ୍ଷର ଔଷଧୀୟ ଗୁଣର ସହାୟତାରେ ରୋଗୀମାନଙ୍କୁ ବୁଝାଇ ସେ ବୃକ୍ଷର ଚେରମୂଳି ସହାୟତାରେ ତାଙ୍କର ରୋଗ ଉପଶମ କରିବା ସହ ବହୁ ଆଜମା ରୋଗୀ ଉପକୃତହୋଇ ତାଙ୍କଠାରେ ଋଣୀ ହୋଇଯାଇଛନ୍ତି । ଏହା ସମସ୍ତେ ସ୍ୱୀକାର କରିବେ ।

'କମଳ ଅପା' ଥିଲେ ଜଣେ ଦକ୍ଷ ଶିକ୍ଷାବିତ୍ । ଜଣେ ଆଦର୍ଶ ଶିକ୍ଷାଗୁରୁ । ବହୁ ଛାତ୍ରଛାତ୍ରୀଙ୍କର ସେ ଥିଲେ ଆଦରଣୀୟ ମାତା ସରସ୍ୱତୀ ଶିକ୍ଷାଦାନରେ ବଳିୟାନ । ଜୀବନଯାକ ସେ ପର ସେବାକୁ ପରମ ସେବା ଭାବରେ ନିଜକୁ ନିୟୋଜିତ କରି ଚାଲିଥିଲେ । ତାଙ୍କର ପରଲୋକ ଓଡ଼ିଶାବାସୀଙ୍କ ନିମନ୍ତେ ଏକ ଅପୂରଣୀୟ କ୍ଷତି ହେଲେ ମଧ୍ୟ ତାଙ୍କର ସ୍ନେହ, ଶ୍ରଦ୍ଧା, ମମତା ଓ ସେବା ନିମନ୍ତେ ସେ ମରି ମଧ୍ୟ ଅମର । ତାଙ୍କର ଆତ୍ମା ବିଭୁଙ୍କ ପାଦପଦ୍ମରେ ଶାନ୍ତିରେ ବାସ କରୁ ଏତିକି କାମନା ।

•••

# A GENTLE COLOSSUS

**Dr. Gour Mohanty**

Let me confess that I had lost the opportunity of being close to Kamal Apa whom I often saw, as I frequented the UNIVERSE. Perhaps my shyness stood in the way. Each time I bowed to her she would nod in response with her very sweet smile. She spoke with a low key and I had never heard her raising her voice. She was wedded to Girija Bhushan Pattnaik, a very well known public figure. But also, related to legendary Biju Pattnaik, she proved to be a brilliant scholar making original contributions in her field, she had become Professor of Botany, and also had a stint as Member of Public Service Commission, thus forming her own identity. But again, simple, sober, soft-spoken, extremely unassuming, she had borne all her attainments lightly and seemed to us a personification of modesty.

It is true that great public figures steal the lime light and cast long shadows to obscure people around them. That has always been the fate of great men's wives, the fairer sex relegated to the footnotes of time. Had not Dorothy Parker observed in 'The Little Hours', " Oh, well, it's a man's world?" Kamal Apa as a devoted Indian wife had happily reconciled to her role in the background accepting it ungrudgingly and stood behind Girija babu as a pillar of support.

It was painful for us in the UNIVERSE Parivar to see Kamal Apa suffering for a long period. Why sometimes good people don't live long, why again good people suffer so much remains a perpetual mystery. But the devotion and total dedication with which her worthy son Byapti had served her to the end was a rarest of the rare phenomena, and a wonderful thing to see for everybody.

In summing up, I feel tempted to quote two women on Mahatma's devoted wife Kasturba whom they knew intimately. Said Sushila Nayar, " ... With all her greatness she had a mother's simple heart and her motherliness pervaded the atmosphere around her." Sarojini Naidu, in her inimitable style had called her as "the living symbol of Indian womanhood ." We feel Kamal Apa too no less deserves both these attributes.

◆◆◆

# ମହିୟସୀ ବିଜ୍ଞାନୀ କମଳ କୁମାରୀ

**ଡଃ ଇଂ. ପ୍ରଭାକର ସ୍ୱାଇଁ**

"ମର୍ତ୍ତ୍ୟମଣ୍ଡଳେ ଦେହବହି, ଦେବତା ହୋଇଗଲେ ମରଇ।" ଏଇ ପୃଥିବୀରେ ଦେବୀ ଓ ଦେବତା ମାନବ ଅବତାର ଗ୍ରହଣ କରି ଶେଷରେ ଦେହତ୍ୟାଗ କରିଛନ୍ତି । ଭଗବାନ ଶ୍ରୀକୃଷ୍ଣ, ପୁରୁଷୋତ୍ତମ ଶ୍ରୀରାମଚନ୍ଦ୍ର, ବୁଦ୍ଧ, ଖ୍ରୀଷ୍ଟ, ସୀତା, ସାବିତ୍ରୀ, ଦ୍ରୌପଦୀ ମଧ୍ୟ ଏଥିରୁ ବ୍ୟତିକ୍ରମ ହୋଇନାହାନ୍ତି । 'ଜନ୍ମ ଥିଲେ, ମୃତ୍ୟୁ ଅଛି' - ଏହା ଧ୍ରୁବସତ୍ୟ । କିନ୍ତୁ ଯେଉଁ ମଣିଷ ତା'ର ଜୀବଦ୍ଦଶାରେ କିଛି ପଦଚିହ୍ନ ରଖିଯାଇଥାଏ, ସେଥିପାଇଁ ସେ ଅମରହୋଇ ରହେ । ଏ ଦୁନିଆରେ ସେଭଳି ମଣିଷ ଆଙ୍ଗୁଠି ଗଣତି । ମଣିଷ ଗବେଷଣା, ଶିକ୍ଷା, ସଂଗଠନ ଓ ସମାଜସେବା କ୍ଷେତ୍ରରେ ଅସାଧାରଣ ବ୍ୟକ୍ତିତ୍ୱ ହେଉଛନ୍ତି ପ୍ରଫେସର ଡଃ କମଳ କୁମାରୀ ପଟ୍ଟନାୟକ । ଉପରୋକ୍ତ ବିଭିନ୍ନ କ୍ଷେତ୍ରରେ କମଳକୁମାରୀଙ୍କ ପାରଦର୍ଶିତା ଥିଲେ ମଧ୍ୟ ଉଦ୍ଭିଦବିଜ୍ଞାନୀ ଭାବରେ ସେ ଆନ୍ତର୍ଜାତିକ ଖ୍ୟାତି ଅର୍ଜନ କରିଥିଲେ ।

କୁମଳ କୁମାରୀଙ୍କ ଜନ୍ମ ୧୯୩୬ ମସିହା ଜାନୁୟାରୀ ୯ ତାରିଖରେ ରାଜ୍ୟର ଏକ ସମ୍ଭ୍ରାନ୍ତ ପରିବାରରେ । କମଳ କୁମାରୀ ବାଲ୍ୟକାଳରେ ବହୁ ସ୍ନେହାବସରରେ ବଢ଼ିଥିଲେ । ଅଲିଅଳି କମଳ କୁମାରୀ ମେଧାବୀ ଛାତ୍ରୀ ଥିଲେ । ସେ ରେଭେନ୍ସା ମହାବିଦ୍ୟାଳୟରୁ ଉଦ୍ଭିଦ ବିଜ୍ଞାନରେ ସ୍ନାତକୋ ର ଡିଗ୍ରୀ ଏବଂ ଆହ୍ଲାବାଦ ବିଶ୍ୱବିଦ୍ୟାଳୟରୁ ପି.ଏଚ୍.ଡ଼ି ହାସଲ କରିଥିଲେ । ପରେ ସେ ଅଧ୍ୟାପନାକୁ ନିଜ ଜୀବନର ବୃତ୍ତି ରୂପେ ଗ୍ରହଣ କରିଥିଲେ । ରେଭେନ୍ସା ମହାବିଦ୍ୟାଳୟର ସ୍ନାତକୋତ୍ତର ଉଦ୍ଭିଦବିଜ୍ଞାନ ବିଭାଗର ପ୍ରଫେସର ଓ ବିଭାଗୀୟ ମୁଖ୍ୟ ରୂପେ ସେ ଅବସର ଗ୍ରହଣ କରିଥିଲେ । ଦୀର୍ଘ ୩୧ ବର୍ଷର ଅଧ୍ୟାପନା ଜୀବନରେ ସେ ବହୁ ଛାତ୍ରଛାତ୍ରୀଙ୍କ ପ୍ରିୟଭାଜନ ହୋଇପାରିଥିଲେ । ତାଙ୍କର ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ୧୪ ଜଣ ଛାତ୍ରଛାତ୍ରୀ ପି.ଏଚ୍.ଡ଼ି, ୧୬ ଜଣ ଏମ୍.ଫିଲ୍ ଡିଗ୍ରୀ ହାସଲ କରି ଆଜି ସମାଜର ବିଭିନ୍ନ କ୍ଷେତ୍ରରେ ପ୍ରତିଷ୍ଠା ଅର୍ଜନ କରିପାରିଛନ୍ତି । ସେ ଜୀବନତମାମ ଆଚରଣ ଓ ଉଚ୍ଚାରଣରେ ସାମଞ୍ଜସ୍ୟ ରଖିଥିଲେ । ସେ ତାଙ୍କର ଛାତ୍ରଛାତ୍ରୀମାନଙ୍କୁ ପୁତ୍ର କନ୍ୟା ସୁଲଭ ଶ୍ରଦ୍ଧା ଦେଉଥିଲେ । ଛାତ୍ରଛାତ୍ରୀ, ସହକର୍ମୀ, ଅଭିଭାବକ ଓ ଜନସାଧାରଣଙ୍କର ସେ ଶ୍ରଦ୍ଧାଭାଜନ ହୋଇପାରିଥିଲେ ।

କମଳ କୁମାରୀଙ୍କ ବହୁ ଗବେଷଣାତ୍ମକ ନିବନ୍ଧମାନ ଜାତୀୟ ଓ ଆନ୍ତର୍ଜାତୀୟ ପତ୍ରପତ୍ରିକାରେ ପ୍ରକାଶିତହୋଇ ଉଚ୍ଚପ୍ରଶଂସା ଲାଭ କରିପାରିଥିଲା । ସେ ଉଦ୍ଭିଦବିଜ୍ଞାନର ଉଚ୍ଚାଙ୍ଗ ଗବେଷଣା ପାଇଁ ଚୀନ ଯାଇଥିଲେ । ଉଦ୍ଭିଦବିଜ୍ଞାନ ସମ୍ପର୍କିତ ବହୁ ଜାତୀୟ ଓ ଆନ୍ତର୍ଜାତୀୟ ଆଲୋଚନା ଚକ୍ରରେ ସେ ଯୋଗଦେଇ ପ୍ରବନ୍ଧମାନ ଉପସ୍ଥାପନ କରି ଆଦୃତି ଲାଭ କରିଥିଲେ । ସେ ମଧ୍ୟ ରେଭେନ୍ସା ମହାବିଦ୍ୟାଳୟରେ ବହୁ ଆଲୋଚନା ଚକ୍ର ଆୟୋଜନ କରିଥିଲେ । ସେ ବହୁ ଗବେଷଣାମୂଳକ ଗ୍ରନ୍ଥ ସମେତ ବିଦ୍ୟାଳୟ ମହାବିଦ୍ୟାଳୟ ଓ ବିଶ୍ୱବିଦ୍ୟାଳୟ ପାଇଁ ପାଠ୍ୟପୁସ୍ତକ ପ୍ରଣୟନ କରିଥିଲେ । ତନ୍ମଧ୍ୟରୁ ବୃକ୍ଷଲତାର ଔଷଧିଗୁଣ, 'Man in Forest, Evloution of Life' ଉଲ୍ଲେଖନୀୟ । ସେ ୧୯୯୩ - ୯୮ ମସିହା ପର୍ଯ୍ୟନ୍ତ ଓଡ଼ିଶା ଲୋକସେବା

ଆୟୋଗର ସଦସ୍ୟ ପଦରେ ଅଧିଷ୍ଠିତହୋଇ ସ୍ୱୀୟ ପ୍ରଶାସନିକ ଦକ୍ଷତା ପ୍ରତିପାଦନ କରିଥିଲେ । ଏହି ସମୟରେ ସେ ଆୟୋଗର କାର୍ଯ୍ୟପ୍ରଣାଳୀରେ କେତେକ ସଂସ୍କାର ଆଣିଥିଲେ ।

କମଳ କୁମାରୀ ଓଡ଼ିଶାର ପ୍ରଥିତଯଶା ସାଂସ୍କୃତିକ ପ୍ରତିଷ୍ଠାନ 'ଦି ୟୁନିଭର୍ସ' ସହିତ ଅଙ୍ଗାଅଙ୍ଗୀ ଭାବେ ଜଡ଼ିତ ଥିଲେ । ଏହି ଅନୁଷ୍ଠାନରେ ଉନ୍ମେଷ ଓ ଉତ୍ତରରେ ତାଙ୍କର ଅବଦାନ ଅନସ୍ୱୀକାର୍ଯ୍ୟ । 'ଦି ୟୁନିଭର୍ସ'ର ପ୍ରାଣପ୍ରତିଷ୍ଠାତା, ଅଦ୍ୱିତୀୟ ସଂଗଠକ, ଲେଖକ ଓ ଚିନ୍ତକ ଗିରିଜାଭୂଷଣ ପଟ୍ଟନାୟକଙ୍କ ସେ ଏକାଧାରରେ ସହଧର୍ମିଣୀ, ସହକର୍ମିଣୀ ଓ ସହପାଠିଣୀ ଥିଲେ । 'ଦି ୟୁନିଭର୍ସ'କୁ ବିଶ୍ୱଖ୍ୟାତି ଦେବାରେ 'କମଳ କୁମାରୀଙ୍କ ଭୂମିକା ଉଲ୍ଲେଖନୀୟ । ସେ ଏହି ଅନୁଷ୍ଠାନ ମାଧ୍ୟମରେ ବହୁ ସମାଜସେବା ମୂଳକ କାର୍ଯ୍ୟ ସହିତ ଲିପ୍ତ ଥିଲେ ।

ସେ ଶ୍ୱାସରୋଗୀଙ୍କୁ ଭିନ୍ନ ବୃକ୍ଷର ପତ୍ର ଔଷଧିଦ୍ୱାରା ଚିକିତ୍ସା କରି ଆରୋଗ୍ୟ କରୁଥିଲେ । ଫଳତଃ ଏହି ରୋଗ ପ୍ରତୀଡ଼ିତମାନଙ୍କର ସେ ଆସ୍ଥାଭାଜନ ହୋଇପାରିଥିଲେ । ସେ ବହୁ ଦୁଃଖିରଙ୍କିଙ୍କର ସେବାରେ ନିଜକୁ ନିୟୋଜିତ କରୁଥିଲେ । ସେ ଜଣେ ସ୍ନେହୀ, ଦରଦୀ ଓ ପରୋପକାରୀ ମଣିଷ ଥିଲେ ।

ଗିରିଜା ବାବୁ ଓ କମଳ କୁମାରୀ ମାଡ଼ାମ୍‌ଙ୍କ ସହିତ ମୋର ସମ୍ପର୍କ ୧୯୮୨ ମସିହାରୁ । ସାରଳା ସାହିତ୍ୟ ସଂସଦର ପ୍ରଥମ ବାର୍ଷିକ ଉତ୍ସବକୁ ମୁଁ ପଟ୍ଟନାୟକ ଦମ୍ପତିଙ୍କୁ ନିମନ୍ତ୍ରଣ କରିବା ପାଇଁ କଳାବିକାଶ କେନ୍ଦ୍ର ନିକଟସ୍ଥ ତାଙ୍କ ବାସଭବନକୁ ଯାଇଥିଲି । ସେହିଦିନଠାରୁ ମୋର ତାଙ୍କ ପରିବାର ସହିତ ସମ୍ପର୍କ ପ୍ରତିଷ୍ଠା ହୋଇଥିଲା । ମୋର ନିମନ୍ତ୍ରଣ କ୍ରମେ ସେମାନେ ସଂସଦରୁ ବହୁ ଉତ୍ସବରେ ଯୋଗଦିଅନ୍ତି ।

ଗିରିଜା ବାବୁ ମୋ' ଜୀବନର ଆଦର୍ଶ । ମୋ' ମତରେ ଉତ୍କଳଜନନୀ ତାଙ୍କଭଳି ଆଉ ଏକ ସାଂସ୍କୃତିକ ସଂଗଠକ ଜନ୍ମ ଦେଇନାହିଁ । ମୁଁ ସାରଳା ସାହିତ୍ୟ ସଂସଦକୁ ଗଢ଼ି ତୋଳିବାରେ ତାଙ୍କର ସାଙ୍ଗଠନିକ ପଦ୍ଧତିକୁ ଅନୁକରଣ ଓ ଅନୁସରଣ କରିଛି । ତାଙ୍କୁ ଗୁରୁ ଦ୍ରୋଣଙ୍କ ଭୂମିକାରେ ରଖି ମୁଁ ଏକଲବ୍ୟର କର୍ମ ନିର୍ବାହ କରିଛି । ଗିରିଜା ବାବୁ ଏବଂ କମଳ କୁମାରୀ ମାଡ଼ାମ୍ ମୋର ଏବଂ ମୋ' ପ୍ରତିଷ୍ଠିତ ସାରଳା ସାହିତ୍ୟ ସଂସଦର ପରମ ଶୁଭଚିନ୍ତକ । ଗିରିଜା ବାବୁଙ୍କ ଦେହାନ୍ତ ମୋତେ ଶକ୍ତ ଆଘାତ ଦେଇଥିଲା । ପୁଣି ଗତ ୧୭ ତାରିଖରେ କମଳ କୁମାରୀ ମାଡ଼ାମ୍‌ଙ୍କ ଇହଧାମ ତ୍ୟାଗ ମୋତେ ମର୍ମାହତ କରିଛି । ଆଜି ତାଙ୍କ ପାଇଁ ଶହସ୍ର ଶହସ୍ର ଛାତ୍ରଛାତ୍ରୀ, ଶ୍ରଦ୍ଧାଳୁ ବ୍ୟକ୍ତିବିଶେଷ, ସର୍ବୋପରି ଓଡ଼ିଶାର ଅଗଣିତ ବୁଦ୍ଧିଜୀବୀ ଲୋତକ ବିସର୍ଜନ କରୁଛନ୍ତି । ଉତ୍କଳଜନନୀ ମଧ୍ୟ ଆଜି ତାର ଜଣେ ବରପୁତ୍ରୀଙ୍କୁ ହରାଇ ଦୁଃଖାଭିଭୂତ ହୋଇଛି । ଶେଷରେ ମୁଁ ଏହି ମହିୟସୀ ଜାତିପ୍ରାଣା ବୈଜ୍ଞାନିକଙ୍କ ଉଦ୍ଦେଶ୍ୟରେ ଏତିକି କହି ଅଶ୍ରୁଳ ଶ୍ରଦ୍ଧାଞ୍ଜଳି ଅର୍ପଣ କରିବା ସହିତ ପରିବାରବର୍ଗଙ୍କ ପ୍ରତି ସମବେଦନା ଜ୍ଞାପନ କରିବି ।

"ମାଟିଦେହ ତୁମ ଗ୍ରାସିଛି ଶ୍ମଶାନ
ମାତ୍ର ଯଶୋଦେହେ ତୁମେ ଆୟୁଷ୍ମାନ ।"

◆◆◆

# କମଳ ମାଉସୀଙ୍କ ବହୁମୁଖୀ ପ୍ରତିଭା

ବାଣୀକାନ୍ତ ମିଶ୍ର

କମଳ ମାଉସୀ । ନା ଧରି ଡାକେନି, ଖାଲି 'ମାଉସୀ' ବୋଲି ଡାକେ । ତାଙ୍କ ବିଷୟରେ କଥା ହେଲାବେଳକୁ ତାଙ୍କୁ 'କମଳ ମାଉସୀ' ବୋଲି ସୂଚାଏ । ତାଙ୍କ ସହିତ ବିଭିନ୍ନ ଦିଗରୁ ସମ୍ପର୍କ ମୋର । ପ୍ରଥମତଃ, ମୋ'ର ଦଦେଇପୁଅ ଭାଇ ସୁବ୍ରତର ଶାଶୁ ସେ, ମୋ'ର ଆଦରର ବୋହୂ ପ୍ରଜ୍ଞାର ମା' । ଦ୍ୱିତୀୟତଃ, ସେ ଧର୍ମପତ୍ନୀ ଥିଲେ ଗିରିଜା ଭୂଷଣ ପଟ୍ଟନାୟକଙ୍କ - ଗିରିଜା ମଉସାଙ୍କୁ ମୁଁ କେବଳ ସୁବ୍ରତର ଶ୍ୱଶୁର ହିସାବରେ ନୁହେଁ, ଜଣେ ଲେଖକ ଓ ସାମାଜିକ କର୍ମୀ ଏବଂ 'ଦି ୟୁନିଭର୍ସ'ର ପ୍ରତିଷ୍ଠାତା ଭାବରେ ମଧ୍ୟ, ଜାଣିଥାଏ । 'ଦି ୟୁନିଭର୍ସ'ରେ ବାମପନ୍ଥୀ ଓ ସାମ୍ୟବାଦୀ ନେତାମାନଙ୍କ ସହିତ ଦେଖା ହୋଇଯାଏ ବହୁତ ସମୟରେ । ମଉସାଙ୍କ ସହିତ ବହୁତ ସମୟରେ ଏକମତ ନହୋଇପାରିଲେ ମଧ୍ୟ ତାଙ୍କର ଲେଖା ପଢ଼ିବାକୁ ଓ କଥା ଶୁଣିବାକୁ ମୋତେ ଭଲ ଲାଗେ। ଏଠାରେ ହିଁ କମଳ ମାଉସୀଙ୍କର ଗୋଟେ ବହୁତ ଭଲଗୁଣ ମୋ'ର ମନେ ପଡ଼େ । ଅତ୍ୟନ୍ତ ପତିବ୍ରତା ହେବା ସତ୍ତ୍ୱେ, ମାଉସୀଙ୍କର ଅଧ୍ୟାପିକା ସ୍ୱାଧୀନଚେତନା ତାଙ୍କୁ ବେଳେବେଳେ ମଉସାଙ୍କ ମତଠାରୁ ଭିନ୍ନ ମତପୋଷଣ କରିବାକୁ ଓ ପ୍ରକାଶ କରିବାକୁ କୁଣ୍ଠିତ କରୁନଥିଲା ।

ମୁଁ ଥରେ ମାଉସୀଙ୍କର ଗୋଟେ ଲେଖା (ଖବର କାଗଜ ବା କେଉଁଠି ମନେ ନାହିଁ) ପଢ଼ିକରି ଆଶ୍ଚର୍ଯ୍ୟ ଓ ଆନନ୍ଦିତ ହୋଇଗଲି । ମୁଁ ଜାଣିନଥିଲି ତାଙ୍କର ଏଇ ଦିଗଟା : ସାମାଜିକ ସଚେତନତାର ବାର୍ତ୍ତାବହ ଭାବରେ । ପରେ ପରେ ଜାଣିଲି ସେ ଦିଗରେ ସେ କେତେ ଉତ୍ସର୍ଗୀକୃତ ବୋଲି । ଏଇ ତୃତୀୟ ଦିଗର ପରେ ଆଉ ଗୋଟେ ସମ୍ପର୍କ ଆସିଥିଲା ଆମର, ଯେତେବେଳେ ତାଙ୍କର ପୁଅ ବ୍ୟାପ୍ତି ଜାଭିୟର ଇନ୍‌ଷ୍ଟିଚ୍ୟୁଟ୍ (ମୁଁ ଯେଉଁଠାରେ ଅଧ୍ୟାପନାରତ)ରେ ଛାତ୍ର ହିସାବରେ ଯୋଗଦେଲା ।

ଯାହାହେଉ, ବହୁତ ସମୟରେ କଟକ ଗଲେ ସେପଟେ ଯାଇ ମଉସା-ମାଉସୀଙ୍କୁ ଦେଖି ବୁଲି ଆସେ । ଏକାକୀ ବା ସ୍ତ୍ରୀ ଅନୀତା ସହିତ । ମାଉସୀଙ୍କର ଖୋଲା ହସଟା ସବୁବେଳେ ମନେ ରହିବ । ଖୋଲା ହୃଦୟ, ଖୋଲା ମନ ଓ ଖୋଲା ହସ । କେତେବେଳେ ବଡ଼ପାଟିରେ ଖୋଲା କଥା ତ କେତେବେଳେ ଧୀରେ । କେତେବେଳେ ଖୋଲା ହସ ତ କେତେବେଳେ ସ୍ମିତହାସ୍ୟ । କିନ୍ତୁ ସେସବୁ ଭିତରେ ତାଙ୍କ ହୃଦୟର ଆଦରଟା ପ୍ରାଞ୍ଜଳ ଭାବରେ ବାରିହୋଇଯାଏ । ଭଗବାନ ତାଙ୍କୁ ସେତେ ଆଦରରେ ରଖନ୍ତୁ । ସେ ଦୁନିଆକୁ ଯେତେ ଆଦର ଦେଇଛନ୍ତି ।

◆◆◆

# କମଳ ମ୍ୟାଡ଼ାମ୍ - ଏକ ଅନନ୍ୟ ପ୍ରତିଭା

**ନିର୍ମଳ କୁମାର ବେହେରା**

ପ୍ରଫେସର ଡକ୍ଟର କମଳ କୁମାରୀ ପଟ୍ଟନାୟକ ଗତ ୧୭.୧୨.୨୦୧୯ (ମଙ୍ଗଳବାର) ଦିନ ଇହସାଗର ପରିତ୍ୟାଗ କରିଛନ୍ତି । ତାଙ୍କ ମୃତ୍ୟୁରେ ବିଜ୍ଞାନକୁ ଲୋକପ୍ରିୟ କରିବାର ଚେଷ୍ଟା ଯେଉଁ କେତେଜଣ ବୈଜ୍ଞାନିକ କରିଛନ୍ତି ସେମାନଙ୍କର ଯୁଗର ଅବସାନ ଘଟିଲା କହିଲେ ଅତ୍ୟୁକ୍ତି ହେବନାହିଁ ।

କମଳ ମ୍ୟାଡ଼ାମ୍‌ଙ୍କୁ ଆମେ ଜାଣିଲୁ ଯେତେବେଳେ ରେଭେନ୍ସା ମହାବିଦ୍ୟାଳୟ (ଏବେକାର ରେଭେନ୍ସା ବିଶ୍ୱବିଦ୍ୟାଳୟ)ରେ ଉଦ୍ଭିଦ ବିଜ୍ଞାନ ସ୍ନାତକୋତ୍ତର ବିଭାଗରେ ଆମେ ନାମ ଲେଖାଇଲୁ । ସେ ୧୯୭୩ ମସିହାର କଥା । ତା' ପରେ ଦୀର୍ଘ ୫ ବର୍ଷ ଧରି ଅଧ୍ୟାପନା ଓ ଗବେଷଣା କରିଲା ସମୟରେ ସେ ଆମର ଗୁରୁ ଓ ଗାଇଡ୍ ଥିଲେ । ତାଙ୍କର ଚମତ୍କାର ବ୍ୟବହାର ଓ ବିଜ୍ଞାନ ପ୍ରତି ଗଭୀର ଜ୍ଞାନ ଯୋଗୁ ସେ ଛାତ୍ର ତଥା ଶିକ୍ଷକ ମହଲରେ ବେଶ୍ ସୁନାମ ଅର୍ଜନ କରିଥିଲେ ।

ବ୍ୟକ୍ତିଗତ ଜୀବନରେ ସ୍ୱାମୀ ଓ ଅସାଧାରଣ ବ୍ୟକ୍ତିତ୍ୱର ଅଧିକାରୀ ଶ୍ରୀ ଗିରିଜା ଭୂଷଣ ପଟ୍ଟନାୟକ । ଦୁଇପୁଅ ପୁପୁ (ଅଭିଜିତ୍), କୁନିପୁଅ (ବ୍ୟାପ୍ତି) ଓ ଝିଅ ପ୍ରଜ୍ଞାକୁ ନେଇ ତାଙ୍କର ସଂସାର ବଡ଼ ଚଳଚଞ୍ଚଳ ଥିଲା । ଗିରିଜା ବାବୁ ଥିଲେ ସେ ସମୟରେ ସାଂସ୍କୃତିକ ଓ ରାଜନୈତିକ ପ୍ରାଣକେନ୍ଦ୍ର କଟକ ସହରରେ ଜଣେ ଅସାମାନ୍ୟ ବ୍ୟକ୍ତିତ୍ୱ । ତାଙ୍କରି ଗଢ଼ା 'ଦି' ୟୁନିଭର୍ସ' ପ୍ରାଙ୍ଗଣରେ ଓଡ଼ିଶାର ଆଗଧାଡ଼ିର ଲୋକମାନେ ଏକାଠି ହେଉଥିଲେ । କମଳ ମ୍ୟାଡ଼ାମ୍ (କମଳ ଅପା) ସେତେବେଳେ ଲୋକପ୍ରିୟ ବିଜ୍ଞାନ ଲେଖିକା, ପ୍ରବକ୍ତା, ବୈଜ୍ଞାନିକ, ଗବେଷକ, ପରୀକ୍ଷକ ଭାବରେ ସମସ୍ତଙ୍କ ଭିତରେ ଆଦୃତ ଥିଲେ । ସେହି ସମୟରେ ମଧୁମେହ ରୋଗ ଉପଚାର କରି ସେ ଅନେକ ଲୋକମାନଙ୍କର ସଫଳ ଚିକିତ୍ସା କରିପାରିଥିଲେ । 'ସମାଜ', ପ୍ରଜାତନ୍ତ୍ର', 'ବିଜ୍ଞାନାଲୋକ', 'ସାଇନ୍‌ସ ରିପୋର୍ଟ'ରେ ଅନ୍ୟ ଗବେଷଣା ପତ୍ର ପତ୍ରିକାରେ ତାଙ୍କର ପ୍ରବନ୍ଧ, ଓଡ଼ିଆ ଓ ଇଂରାଜୀରେ ପ୍ରକାଶିତ ହେଉଥିଲା । ବିଜ୍ଞାନ ପ୍ରଚାର ସମିତି, ଓଡ଼ିଶା ବିଜ୍ଞାନ ଏକାଡେମୀ, ଓଡ଼ିଶା ଉଦ୍ଭିଦବିଜ୍ଞାନ ସମିତି ଇତ୍ୟାଦି ସହିତ ଅଙ୍ଗାଙ୍ଗୀ ଭାବେ ଜଡ଼ିତ ଥିଲେ । ରେଭେନ୍ସା ଉଦ୍ଭିଦବିଜ୍ଞାନ ବିଭାଗର ପ୍ରଫେସର ଓ ବିଭାଗୀୟ ମୁଖ୍ୟ ସହିତ ଓଡ଼ିଶା ପବ୍ଲିକ ସର୍ଭିସ୍ ଆୟୋଗର ସଭ୍ୟ ମଧ ଥିଲେ ।

ଚାକିରୀରୁ ଅବସର ନେବାପରେ ମଧ ଗବେଷଣା ଓ ବିଜ୍ଞାନ ସମ୍ବନ୍ଧୀୟ କାର୍ଯ୍ୟକ୍ରମ ସହିତ ନିଜକୁ ଜଡ଼ିତ ରଖିଥିଲେ । ପ୍ରାୟ ୨/୩ ବର୍ଷ ପୂର୍ବରୁ କ୍ରମାଗତ ଭାବରେ ଅସୁସ୍ଥ ଓ ପୀଡ଼ିତ ଥିବାରୁ ପ୍ରାୟ ବାହାର ଦୁନିଆ ସହିତ ତାଙ୍କର ସମ୍ପର୍କ ନଥିଲା ।

ତାଙ୍କର ଅମର ଆତ୍ମାର ସଦ୍‌ଗତି ପାଇଁ ପ୍ରାର୍ଥନା କରିବା ସହିତ ତାଙ୍କ ପରିବାରର ସଦସ୍ୟଙ୍କୁ ଭଗବାନ ଏହି ଦୁଃଖ ସମୟର ସାମନା କରିବାକୁ ଶକ୍ତି ଦିଅନ୍ତୁ ।

◆◆◆

# ସ୍ମୃତିରେ ଜୀବନ୍ତ କମଳ ନାନୀ

**ପ୍ରଫେସର ଡକ୍ଟର ଆଶୁତୋଷ ଦେବତା**

ସ୍ମୃତି ଓ ଅନୁଭୂତି ମଣିଷ ଜୀବନର ପାଥେୟ । ସ୍ମୃତିର ସାଉଁଟା ଫୁଲ ଗୋଟାଇ ହୁଏ ଅନୁଭବରୁ ଓ ଅନୁଭବର ପରିପକ୍ୱତା ଟାଣିଦିଏ ଅନୁଭୂତିର ଗାର । ଦୀର୍ଘ ଅର୍ଦ୍ଧଶତାବ୍ଦୀ ଧରି କେବଳ ଓଡ଼ିଶାରେ କାହିଁକି ଭାରତ ତଥା ବିଦେଶରେ ମଧ୍ୟ ଉଦ୍ଭିଦ ବିଜ୍ଞାନ ଶିକ୍ଷା, ଗବେଷଣା ଓ ପ୍ରତିଷ୍ଠିତ ପ୍ରଶାସକ ଭାବରେ ଯାହାର ଅବଦାନ ପ୍ରତିବିମ୍ବିତ ହେଉଥିଲା ସେ ହେଉଛନ୍ତି ପ୍ରଫେସର ଡଃ କମଳ କୁମାରୀ ପଟ୍ଟନାୟକ ।

ବଡ଼ଭଉଣୀର ସ୍ନେହ, ଶ୍ରଦ୍ଧା, ସଦିଚ୍ଛା ମୁଁ ତାଙ୍କଠାରୁ ପାଇଛି । ମୁଁ ସେ ବ୍ୟକ୍ତିତ୍ୱଙ୍କୁ କେଉଁ ନାମ ଧରି ସମ୍ବୋଧନ କରେ ସଠିକ୍ ଭାବରେ ମଧ୍ୟ ଉଲ୍ଲେଖ କରିପାରିବି ନାହିଁ । ତେବେ କଲେଜରେ ଥିଲାବେଳେ 'ମାଡ଼ାମ୍' ୟୁନିଭର୍ସରେ ଓ ଘରେ ଦେଖାହେଲେ କମଳ ନାନୀ ବୋଲି ଡାକିଥାଏ । ମୁଁ ୧୯୭୫ ମସିହାରେ ଷ୍ଟିଓ୍ୱାର୍ଟ ବିଜ୍ଞାନ ମହାବିଦ୍ୟାଳୟ, କଟକରେ ଉଦ୍ଭିଦ ବିଜ୍ଞାନ ବିଭାଗର ଅଧ୍ୟାପକ ହିସାବରେ ଯୋଗଦେବା ଦିନଠାରୁ କମଳ ନାନୀଙ୍କ ସହିତ ସମ୍ପର୍କର ନିବିଡ଼ତା ବଢ଼ିଯାଇଥିଲା । ଖୁବ୍ ଅଳ୍ପ ଦିନରେ ମୁଁ ତାଙ୍କ ପରିବାରର ବିଶ୍ୱାସଭାଜନ ହୋଇପାରିଥିଲି । କମଳ ନାନୀଙ୍କ ବ୍ୟକ୍ତିତ୍ୱ ବିଷୟରେ ରୋମନ୍ଥନ କଲେ ତାଙ୍କର ସ୍ୱାମୀ ସ୍ୱର୍ଗତ ଗିରଜା ପଟ୍ଟନାୟକଙ୍କ ନାମ ଆପେ ଆପେ ସାମ୍ନାକୁ ଆସିଥାଏ । ଜଣେ ପ୍ରଜ୍ଞାବାନ ହେଲେ, ଅନ୍ୟ ଜଣେ କ୍ରିୟାଶୀଳ ଭାବରେ ସମାଜରେ ଖୁବ୍ ସମୟ ଧରି ଖ୍ୟାତିବାନ ହୋଇପାରିଥିଲେ ।

କମଳନାନୀଙ୍କ ଘରକୁ ଯେତେବେଳେ ଯେଉଁ ସମୟରେ ଗଲେ ମଧ୍ୟ ସେ ପେଟପୂରା ଖାଇବାକୁ ନଦେଇ ଛାଡ଼ନ୍ତି ନାହିଁ । ଔଷଧ ବୃକ୍ଷଠାରୁ ଆରମ୍ଭ କରି ଯାବତୀୟ ଉଦ୍ଭିଦ ବିଜ୍ଞାନ ବିଷୟରେ ଆଲୋଚନା କରନ୍ତି । ଦୀର୍ଘବର୍ଷ ଧରି ଜାତୀୟ ବିଜ୍ଞାନ କଂଗ୍ରେସ ଓ ବିଭିନ୍ନ ଆନ୍ତର୍ଜାତୀୟ, ଜାତୀୟ ଓ ରାଜ୍ୟସ୍ତରୀୟ ସମ୍ମିଳନୀରେ ଏକାଠି ଯୋଗଦେବାର ସୁଯୋଗ ପାଇଛୁ । ବୋଧହୁଏ ୧୯୭୯ ମସିହା ଆଗ ବା ପଛରୁ 'ୟୁନିଭର୍ସ' ଦ୍ୱାରା ଆୟୋଜିତ ଆନ୍ତର୍ଜାତୀୟ ପରିବେଶ ବିଜ୍ଞାନ ସମ୍ମିଳନୀର ଅନ୍ୟତମ ଆବାହକ ଭାବରେ ତାଙ୍କ ସାନ୍ନିଧ୍ୟ ଲାଭ କରିଅଛି । ସାଧାରଣତଃ ସେ କାହାରି ଉପରେ ରାଗନ୍ତି ନାହିଁ, କିନ୍ତୁ କୌଣସି କାରଣରୁ ଚିଡ଼୍ ଚିଡ଼୍ ହୋଇଗଲେ ସଙ୍ଗେ ସଙ୍ଗେ ଭୁଲିବିଯାଆନ୍ତି । ତାଙ୍କର ହସ ହସ ମୁହଁ, ମୁଣ୍ଡରେ ବଡ଼ ସିନ୍ଦୁର ଟୋପା ଓ ଚାପି ହୋଇଥିବା ବାଳ କୁଣ୍ଡେଇବାର ସ୍ୱତନ୍ତ୍ରତା ସମସ୍ତଙ୍କୁ ଆହ୍ଲାଦିତ କରିଥାଏ । ଶ୍ୱାସରୋଗ ପାଇଁ ନିଜଦ୍ୱାରା ପ୍ରସ୍ତୁତ ଔଷଧ ସାଧାରଣରେ ବିତରଣ କରିବାରେ ସେ ଆନନ୍ଦ ପାଉଥିଲେ । ସେଥିଲାଗି ତାଙ୍କୁ 'ଚରକଙ୍କ'ର ଅନ୍ୟତମ ଶିଷ୍ୟା ବୋଲି ଅଭିହିତ କଲେ ଭୁଲ ହେବ ନାହିଁ । ଗିରିଜା ବାବୁ ଶ୍ୱାସରୋଗରେ ବେଳେ ବେଳେ ବ୍ୟତିବ୍ୟସ୍ତ ହୋଇଯାଉଥିଲେ । କଥା ଛଳରେ ମୁଁ ତାଙ୍କୁ ଥରେ ମଜାରେ ପଚାରିଥିଲି ଆପଣ ପ୍ରଫେସର କମଳ ପଟ୍ଟନାୟକ ପେଟେ  ଶ୍ୱାସ ପାଇଁ ଖାଉ ନାହାନ୍ତି ? ସେ କିନ୍ତୁ ଉପେକ୍ଷା ନ କଲେ

ମଧ୍ୟ ନିରବ ହସଟିଏ ପ୍ରତ୍ୟୁ  ତ୍ତରେ ଦେଇଥିଲେ । ସମାଜରେ ଶାନ୍ତି, ସହବସ୍ଥାନ, ଏକତା ଓ ଭାତୃଭାବ ସୃଷ୍ଟି କରିବାରେ କଳାବିକାଶ କେନ୍ଦ୍ରର ନିକଟରେ  ଥିବା ୭ ନମ୍ବର କ୍ୱାର୍ଟରଟି ଏକ ବୌଦ୍ଧିକ ଆଖଡ଼ାଶାଳ ଥିଲା । କମଳକାନ୍ତ ଓ ଗିରିଜା ପଟ୍ଟନାୟକଙ୍କ ପରିବାର ତରଫରୁ ଆୟୋଜିତ ତାଙ୍କର ପିଲାମାନଙ୍କର ବିବାହ ଉତ୍ସବରେ ନିମନ୍ତ୍ରଣ କରିବାକୁ ସ୍ୱାମୀ-ସ୍ତ୍ରୀ ଦୁଇଜଣ ଆମ ଘରେ ହାଜର ହୁଅନ୍ତି । ନ ଆସିବାର ଚାରା ନଥାଏ । ଟେଲିଫୋନରେ ଗମ୍ଭୀରତା କିନ୍ତୁ ହୃଦୟରେ ଆବେଗତାକୁ ଏଡ଼ାଇଯିବା କଷ୍ଟକର ହୋଇପଡ଼େ । ସ୍ୱାମୀ-ସ୍ତ୍ରୀ ଦୁଇଜଣଙ୍କର ଅଦମ୍ୟ ପ୍ରଚେଷ୍ଟାରୁ 'ୟୁନିଭର୍ସ' ଏକ ସ୍ୱତନ୍ତ୍ର ମାନ୍ୟତା ପାଇପାରିଛି  । ଏହି ଅନୁଷ୍ଠାନକୁ ବଞ୍ଚାଇ ରଖି ଆଗକୁ ନେବାରେ ସମସ୍ତେ ସହଯୋଗ କଲେ ସେହି ଅମର ଆତ୍ମାଙ୍କ ପ୍ରତି ଉପଯୁକ୍ତ ସମ୍ମାନ ହେବ ।

ଜୀବନର ଯାତ୍ରାରେ ଆତ୍ମୀୟ ସ୍ୱଜନଙ୍କ ଛଡ଼ା ବହୁ ସହାଯାତ୍ରୀଙ୍କ ସହ ଚିହ୍ନା ଜଣା ହୋଇଥାଏ । କିନ୍ତୁ ତା' ମଧ୍ୟରୁ ଯେଉଁ କେତେଜଣ ବ୍ୟକ୍ତି ସାଉଁଟିବା ପରି ହୋଇଥାଆନ୍ତି ସେମାନେ ସ୍ମୃତିର ଅନୁକୋଣରେ ଏକ ସ୍ୱତନ୍ତ୍ର ସ୍ଥାନ ବଜାୟ ରଖନ୍ତି  । ସେହିଭଳି ଜଣେ ଅନନ୍ୟା ବ୍ୟକ୍ତିତ୍ୱଙ୍କୁ ମୁଁ ମୋର ଶ୍ରଦ୍ଧାସୁମନ ଅର୍ପଣ କରୁଅଛି ।

◆◆◆

# ଶ୍ରଦ୍ଧାଞ୍ଜଳି

**ରୀତାଞ୍ଜଳି ମିଶ୍ର**

ଧ୍ରୁବସ୍ୟ ହି ଜାତ ମୃତ୍ୟୁ ....

ମ୍ୟାଡ଼ାମ୍ କମଳ କୁମରୀ ପଟ୍ଟନାୟକ ମୋ' ପାଇଁ ଜଣେ ଅତି ସ୍ନେହୀ, ସୁନ୍ଦର, ପରୋପକାରୀ। ମା' ଭଳି ଦିଗ୍‌ଦର୍ଶିକା ଅଟନ୍ତି । ଡାକ୍ତର ନହୋଇଥିଲେ, ମୁଁ ଆଜି ତାଙ୍କୁ ଅନୁସରଣ କରି ଉଦ୍ଭିଦ ବିଜ୍ଞାନରେ ଅଧ୍ୟାପିକା ହୋଇଥାନ୍ତି । ରେଭେନ୍ସାରେ ପଢ଼ିବାବେଳେ ମୋର ପ୍ରିୟ ଅଧ୍ୟାପିକାଙ୍କର ଛାତ୍ରୀ ହେବାର ସୁଯୋଗ ପାଇଥିଲି । ବହୁତ ବର୍ଷ ପରେ ପୁଣି ରେଭେନ୍‌ସିଆନ୍ ୧୯୮୪ ମସିହା ଗ୍ରୁପ୍‌ରେ ପ୍ରଜ୍ଞା ସାଙ୍ଗରେ ଦେଖା ହେବାପରେ ମ୍ୟାଡ଼ାମ୍‌ଙ୍କୁ ଥରେ ତାଙ୍କ ବାସଭବନରେ ଦେଖିବାର ସୁଯୋଗ ପାଇଥିଲି । କିନ୍ତୁ ସେତେବେଳକୁ ସେ ଶଯ୍ୟାଶାୟୀ ହୋଇସାରିଥିଲେ । ତାଙ୍କର ସେବା ଯତ୍ନ ପାଇଁ ତାଙ୍କର ପିଲାମାନଙ୍କର ଅବଦାନ ଅବିସ୍ମରଣୀୟ । ଆପଣ ସବୁବେଳେ ଆମ ପାଇଁ ଅମର ହୋଇ ରହିବେ । ଆପଣଙ୍କର ଅମର ଆତ୍ମାର ସଦ୍‌ଗତି କାମନା କରୁଛି । ସ୍ୱର୍ଗପୁରରୁ ଆପଣଙ୍କର ଆଶୀର୍ବାଦ କାମନା କରି ରହୁଛି ।

◆◆◆

# "ମାଆ ମୋର ଗଢ଼ା ଭିନ୍ନ ଉପାଦାନେ"

ବ୍ୟାପ୍ତି ପଟ୍ଟନାୟକ

ମୋର ମା' ବିଷୟରେ କିଛି ଲେଖିବା ମୋ' ପାଇଁ କଷ୍ଟକର କାରଣ ତାଙ୍କର ଅବର୍ତ୍ତମାନରେ ଏହି ଘଡ଼ିସନ୍ଧି ମୁହୂର୍ତ୍ତରେ ନିଜକୁ ସନ୍ତୁଳିତ କରି ରଖିବା ଶ୍ରେୟସ୍କର। ତାଙ୍କର ସମସାମୟିକ ବନ୍ଧୁ, ଶିକ୍ଷାର୍ଥୀ ଓ ତାଙ୍କୁ ଅତି ଆଦରର ସହ ସମ୍ମାନ ଦେଉଥିବା ବ୍ୟକ୍ତିବିଶେଷ ମୋର ମା'ଙ୍କର ବହୁମୁଖୀ ପ୍ରତିଭା ଓ ବ୍ୟକ୍ତିତ୍ୱ ବିଷୟରେ ସ୍ମୃତିଚାରଣ କରିଥିବେ। ଯେପରିକି ତାଙ୍କର ପ୍ରଫେସର ଡକ୍ଟର ପ୍ରଭାତ ମିଶ୍ର ମୋତେ କହିଲେ, "ମୋର ମା' ବିଷୟରେ ମୁଁ ତୋଠୁ ବେଶୀ ଜାଣିଛି।" ସ୍ମୃତି ରୋମନ୍ଥନ କଲେ ବହୁତ କଥା ଲେଖିହେବ । କିନ୍ତୁ ମୁଁ ଆଜି ଏହି ଲେଖା ମାଧ୍ୟମରେ ଆବିଷ୍କାର କରିବାକୁ ଚେଷ୍ଟା କରିବି କାହିଁକି ମୋ ମା' ଅନନ୍ୟା।

ଆମର ପିଲାଦିନର ପରିବାର କହିଲେ ମୋ' ବାପା, ମା', ବଡ଼ ଭଉଣୀ ଓ ବଡ଼ଭାଇ। କିନ୍ତୁ ୭, ରାଷ୍ଟ୍ରଭାଷା କହିଲେ ଏହା ଏକ ଅର୍ଦ୍ଧଶତାବ୍ଦୀର ଇତିହାସ। ଏହି ଘର ଏକ ପ୍ରକୃତ ସାମ୍ୟବାଦୀ ଓ ସମାଜବାଦୀ ମିଶ୍ରିତ ଏକ ବିରାଟ ବାସ୍ତବିକ ଉଦାହରଣ କହିଲେ ଅତ୍ୟୁକ୍ତି ହେବନାହିଁ। ମୁଁ ଭାବୁଛି ଏହା ମୋ' ବାପାଙ୍କର ବଳିଷ୍ଠ ଚିନ୍ତାଧାରା । କିନ୍ତୁ ତାର ସଫଳ ରୂପାୟନ ଦେଇଥିଲେ ମୋ' ପୂଜ୍ୟ ମା'। ବିଶେଷତଃ ଷାଠିଏ ଓ ସତୁରୀ ଦଶକର କଟକ, ଓଡ଼ିଶାର ସାଂସ୍କୃତିକ, ରାଜନୈତିକ ଓ ଅର୍ଥନୈତିକ ପ୍ରାଣକେନ୍ଦ୍ର ଥିଲା। ତା'ଛଡ଼ା ଉଚ୍ଚନ୍ୟାୟାଳୟ, ପୁଲିସ୍ ହେଡ଼କ୍ୱାଟର, ବଡ଼ମେଡ଼ିକାଲ ଓ ରେଭିନ୍ୟୁ ହେଡ଼କ୍ୱାଟର। ତେଣୁ ଜାତି, ଧର୍ମ, ବର୍ଣ୍ଣ ଓ ନିର୍ବିଶେଷରେ ବିଭିନ୍ନ ଲୋକଙ୍କର ସମାଗମ ଆମ ଘରେ ବିଭିନ୍ନ ସମସ୍ୟାର ସମାଧାନ ପାଇଁ । ତା'ଛଡ଼ା ବନ୍ଧୁବାନ୍ଧବଙ୍କର ଆଗମନ ବିଭିନ୍ନ କାର୍ଯ୍ୟକ୍ରମରେ। ମୋର ମା'ଙ୍କର ଉଦାର ମନୋଭାବ ହିଁ ସମ୍ଭବପର କରିଥିଲା ପ୍ରତ୍ୟକ୍ଷରେ ବା ପରୋକ୍ଷରେ ବିଭିନ୍ନ ଲୋକଙ୍କ ସମସ୍ୟାର ସମାଧାନ। ମୋର ଖୁଡ଼ୀ କହୁଥିଲେ, ଗୋଟାଏ ଦିନ କୌଣସି ପ୍ରକାରର ଫଙ୍କସନ୍ ନଥାଇ ଆମ ଘରେ ମଧ୍ୟାହ୍ନ ଭୋଜନ କରିଥିଲେ ଅଢ଼ଷଠି ଜଣ। ଆଜି ଭାବିଲେ ସମସ୍ତଙ୍କୁ ଆଚମ୍ବିତ କରୁଥିବ ନିଶ୍ଚୟ ।

ବାପାଙ୍କର ମାନସ ସନ୍ତାନ ୟୁନିଭର୍ସ ସମ୍ଭବପର ହୋଇଥିବା ମୋର ମା'ଙ୍କର ବଳିଷ୍ଠ ବଳିଦାନ ଓ ଅକୁଣ୍ଠ ପ୍ରୋତ୍ସାହନ ଯୋଗୁଁ । ମୁଁ ଭାବୁଛି କୌଣସି ଉଚ୍ଚଶିକ୍ଷିତ ମହିଳା ତାଙ୍କର ସ୍ୱାମୀଙ୍କର ଏପରି ଚିନ୍ତାଧାରାକୁ ଦୃଢ଼ ସମର୍ଥନ ଜଣାଇବା ଉଚିତ ମନେ କରିବେ ନାହିଁ। କିନ୍ତୁ ବାପାଙ୍କର ସ୍ୱାଭିମାନକୁ ସେ କେବେହେଲେ ଆଘାତ ଦେଉନଥିଲେ ବରଂ ନିଜର ସୁଖ ଓ ସ୍ୱାଚ୍ଛନ୍ଦ୍ୟକୁ ଭୁଲିଯାଇଥିଲେ ବାପାଙ୍କୁ ସମାଜରେ ଜଣେ ପ୍ରତିଷ୍ଠିତ ବ୍ୟକ୍ତି ହିସାବରେ ପରିଗଣିତ କରିବା ପାଇଁ। ଦେଶରେ ଜରୁରୀକାଳୀନ ପରିସ୍ଥିତି। ତତ୍କାଳୀନ ମୁଖ୍ୟମନ୍ତ୍ରୀ ଶ୍ରୀମତୀ ନନ୍ଦିନୀ ଶତପଥୀ ଆସିଥାନ୍ତି ରେଭେନ୍ସା କଲେଜ। ମଞ୍ଚରେ ବସିଥାନ୍ତି ସେ। ମା'ଙ୍କୁ ଦେଖିଲେ ଓ ଠାରରେ ଡାକିଲେ ମଞ୍ଚ ଉପରକୁ। ସମସ୍ତେ ଆଚମ୍ବିତ । ପଚାରିଲେ- "ତୋର ସଂସାର କେମିତି ଚାଲିଛି, ଗିରିଜା ଓ



ମୁଁ ସହଯୋଦ୍ଧା ଥିଲୁ । ସେ ରାଜନୀତି ଛାଡ଼ିଦେଲା, ଓକିଲାତି ଛାଡ଼ିଦେଲା, ଚାକିରି ଭଲ ଲାଗିଲା ନାହିଁ । ବର୍ତ୍ତମାନ ୟୁନିଭର୍ସ। ରୋଜଗାର ଶୂନ କିନ୍ତୁ ଖର୍ଚ୍ଚ ଅଧିକ । ତୁ ଚଳୁଛୁ କେମିତି ? ତୋପରି ସ୍ତ୍ରୀ ପାଇଛି ବୋଲି ତାର କିଛି ଭୟ ନାହିଁ।" ଏଠାରେ କହିବା ଉଚିତ ମନେ କରିବି, ସେ ସମୟରେ ରାଜନୈତିକ ଉଷ୍ମ ବାତାବରଣର ବିରୋଧାଭାଷ ୭, ରାଷ୍ଟ୍ରଭାଷା ରୋଡ଼ ଘରେ ଦଳମତ ନିର୍ବିଶେଷରେ ଗହଳି ଲାଗିରହିଥିଲା । ତାର ଆଭାସ ମୁଖ୍ୟମନ୍ତ୍ରୀ ପାଇଥିଲେ । କିନ୍ତୁ ମା'ଙ୍କ ପ୍ରତି ଭଲପାଇବା ବୋଧେହୁଏ ଅବରୋଧ କରିଥିଲା ମୁଖ୍ୟମନ୍ତ୍ରୀଙ୍କୁ କୌଣସି ଏକ ବଳିଷ୍ଠ ପଦକ୍ଷେପ ନେବାପାଇଁ ।

ରେଭେନ୍ସା କଲେଜରୁ ଫେରିବା ସମୟରେ ପିଲାଦିନେ ମା'ଙ୍କୁ ଦେଖିଛି ଛତ୍ରବଜାରରୁ ରିକ୍ସାରେ ପନିପରିବା ଆଣିବା। ଆଜି ବୁଝିପାରୁଛି, ଅଳ୍ପ ଦରମାରେ ବିରାଟ ସଂସାରକୁ ସାଉଁଟିବା ପାଇଁ ମା'ଙ୍କର ଅଭିନବ ପ୍ରୟାସ । ସନ୍ଧ୍ୟା ୭ଟାରେ ବାପାଙ୍କର ବରାଦ ଫୋନରେ, "କମଳ ଦୁଇ IAS ବନ୍ଧୁ ଆସିଛନ୍ତି, ସେମାନେ ଆମ ଘରେ ୮.୩୦ରେ ରାତ୍ରିଭୋଜନ କରିବେ । ସମ୍ଭବ କି ? ରାତ୍ରିଭୋଜନ ପରେ ସେମାନେ ଫେରିଯିବେ ଭୁବନେଶ୍ୱର ୟୁନିଭରସିଁକୁ ଆନ୍ତର୍ଜାତିକ ସେମିନାର ବିଷୟରେ ଆଲୋଚନା ପାଇଁ।"ଉତ୍ତର ଆସିଲା, ହଁ । ପିଲାଟିକୁ ପଠାଉଛି ବକ୍ସିବଜାର ଚିକେନ୍ ପାଇଁ। ଆଜି ମଧ୍ୟ ହସି ହସି ହିଭେକ୍ ଅଙ୍କଲ ମନେ ପକାନ୍ତି ମା'ଙ୍କ Flexibilityକୁ କମଳ "ପୋଲାଣ୍ଡରୁ ଚାରି ଜଣ ଡେଲିଗେଟ୍ ଆସି ପନ୍ଦର ମିନିଟ୍‌ରେ ପହଞ୍ଚିବେ । ସନ୍ତୋଷ ଯାଇଥିଲା ଫୁଲ ଦୋକାନ । ସବୁ ଫୁଲ ଦୋକାନ ବନ୍ଦ । ଫୁଲତୋଡ଼ା ଦରକାର ।" ଆମେ ଭାଇ ଭଉଣୀ ବିସ୍ମିତହୋଇ ଚାହିଁ ରହିଥିବୁ । ମା'ଙ୍କର ଐତିହାସିକ Flower Cutting instrument-କଦଳୀ ଗଛର ବାହୁଙ୍ଗା ଓ ପରିଶେଷରେ record timeରେ ଘରେ ଫୁଟୁଥିବା ଫୁଲମାନଙ୍କ ସମ୍ମାହୋରରେ ଚାରିଟି ଫୁଲତୋଡ଼ା । ମୁଁ ଭାବୁଛି, ଆଜି କ'ଣ ଏହା ସମ୍ଭବପର । ଏହିପରି ବହୁତ କଥା, କହିଲେ ସରିବ ନାହିଁ ।

୧୯୮୨-୮୫ ଆମ ପରିବାର ପାଇଁ ଖରାପ ସମୟ ଥିଲା । ଘଯଣାକ୍ରମେ ସରକାରଙ୍କ ବାପାଙ୍କ ଉପରେ ଆକ୍ରୋଶର ଶିକାର ହୋଇଛନ୍ତି ମା'। ଫଳସ୍ୱରୂପ ତାଙ୍କର ବଦଳି ହୋଇଯାଇଛି ବ୍ରହ୍ମପୁର ଖଲ୍ଲିକୋଟ କଲେଜ୍ । ତଥାପି ସରକାରଙ୍କ କିଛି ମନ୍ତ୍ରୀ ଓ ଗ୍ରାମାଞ୍ଚଳ ଅଧିକାରୀଙ୍କ ସହଯୋଗ କ୍ରମେ ମା'ଙ୍କର ଦୁଇବର୍ଷ Study leave ମଞ୍ଜୁର ହୋଇଛି । କିନ୍ତୁ ଦରମା ବନ୍ଦ, ମା'ଙ୍କୁ ମାଲେରିଆ ରୋଗ। କଠିନ ସମୟ। ପରିବାର ଚଳେଇବା କଷ୍ଟକର ବ୍ୟାପାର। ଜଣେ ରୋଗାଗ୍ରସ୍ତ ଉଚ୍ଚଶିକ୍ଷିତା ମହିଳାଙ୍କ ପ୍ରତ୍ୟେକ ଦୁଇ ତିନି ଦିନରେ ଥରେ ଏକୁଟିଆ ଭୁବନେଶ୍ୱର ଗସ୍ତ ବସ୍‌ରେ। ଉଦ୍ଦେଶ୍ୟ ସଚିବାଳୟରେ ମନ୍ତ୍ରୀ ଓ ପ୍ରଶାସନିକ ଅଧିକାରୀଙ୍କୁ ଦେଖା କରି ନିଜର ହକ୍ ମାଗିବା। ଅଦମ୍ୟ ସାହାସ। ଶେଷରେ ବିରୋଧୀଦଳ ନେତା ମାମୁଁ ବିଜୁ ପଟ୍ଟନାୟକଙ୍କ ହସ୍ତକ୍ଷେପ ଓ କିଛି ଶୁଭାକାଙ୍କ୍ଷୀଙ୍କ ସହଯୋଗରେ ମା'ଙ୍କର ଅସ୍ମୀତା ବଜାୟ ରହିପାରିଛି। ଏହି ପରିପ୍ରେକ୍ଷୀରେ ମାମୁଁଙ୍କ ସରକାରଙ୍କୁ ତାଗିଦ୍ "I know Girija is a controversial person But Kamal is innocent. If you have anything to do then deal with Girija. Unnecessarily Kamal cannot be a victim". ମାଆ ପୁନଃଅବିସ୍ଥାପିତ ରେଭେନ୍ସା କଲେଜର

ଉଦ୍ଭିଦବିଜ୍ଞାନର ମୁଖ୍ୟ ହିସାବରେ । ଅଢ଼େଇ ବର୍ଷର ସଂଗ୍ରାମରେ ମା' ବାପାଙ୍କୁ କେବେ କହିନାହାଁନ୍ତି, "ତମ ଯୋଗୁଁ ମୁଁ ବହୁତ ହଇରାଣ ହୋଇଗଲି ।" ଗତକାଲି କଂଗ୍ରେସ ନେତା ନିରଞ୍ଜନ ପଟ୍ଟନାୟକ ମା'ଙ୍କୁ ଶ୍ରଦ୍ଧାଞ୍ଜଳି ଜଣାଇବା ଅବସରରେ ମନେପକାଉଥିଲେ ସେ କଥା ସବୁ ।

୧୯୯୩ ମସିହା ସେପ୍ଟେମ୍ବର - ଅକ୍ଟୋବର ମାସ । ସ୍ୱର୍ଗତ ବିଜୁ ପଟ୍ଟନାୟକ ମୁଖ୍ୟମନ୍ତ୍ରୀ। ଖୋଜା ଚାଲିଥାଏ ଓଡ଼ିଶା ଲୋକସଭା ଆୟୋଗର ଜଣେ ମହିଳା ସଦସ୍ୟ ମନୋନୟନ କରିବା ପାଇଁ। ଆବେଦନକାରୀ ଅନେକ। ମୁଖ୍ୟମନ୍ତ୍ରୀ ଦ୍ୱନ୍ଦ୍ୱରେ। ହେବା ସ୍ୱାଭାବିକ। ତତ୍କାଳୀନ ବିଧାନସଭାର ବାଚସ୍ପତି, ବୋଧେହୁଏ ସ୍ୱର୍ଗତ ଯୁଧିଷ୍ଠିର ଦାସ। କୌଣସି ଏକ ବିଷୟବସ୍ତୁ ଉପରେ ଆଲୋଚନା କରୁଥିବା ସମୟରେ ମୁଖ୍ୟମନ୍ତ୍ରୀଙ୍କୁ ଅବଗତ କରାଇଲେ "ମୁଁ ଯାଇଥିଲି ପୁସ୍ତକ ଦୋକାନ। ପ୍ରଫେସର କମଳ କୁମାରୀ ପଟ୍ଟନାୟକ ବୋଲି ଜଣେ ଲେଖିକାଙ୍କ ଲିଖିତ ପୁସ୍ତକ ବହୁତ ଉଚ୍ଚକୋଟୀର। ଆପଣ ତାଙ୍କୁ ଜାଣିଛନ୍ତି କି ? ତାଙ୍କୁ ଓଡ଼ିଶା ଲୋକସଭା ଆୟୋଗର ସଦସ୍ୟା କଲେ କେମିତି ହୁଅନ୍ତା ?" ମୁଖ୍ୟମନ୍ତ୍ରୀଙ୍କ ସ୍ମିତହାସ୍ୟ। ସଦସ୍ୟତା ଗ୍ରହଣ କରିବା ପରେ ମାଆଙ୍କର ମୁଖ୍ୟମନ୍ତ୍ରୀଙ୍କୁ ଦେଖା କରିବା ପାଇଁ ଯାଇଥାଆନ୍ତି ନଭେମ୍ବର ମାସ ଦ୍ୱିତୀୟ ସପ୍ତାହରେ। ମୁଖ୍ୟମନ୍ତ୍ରୀଙ୍କ ମା'ଙ୍କୁ Compliment, "Kamal I am happy that you have become member OPSC". "ମାଆଙ୍କ ଆଖିରେ ଦୁଇଧାର ଲୁହ । ଫେରିଆସି ବାପାଙ୍କୁ କହିଲେ, ମାମୁଁ ତ କହିଲେ ନାହିଁ ଯେ "I have made you member of OPSC". ଏହା ନିଶ୍ଚୟ ମାମୁଁଙ୍କର ଉଦାର ମନୋଭାବର ପରିଚାୟକ ଏବଂ ପରୋକ୍ଷରେ ବୋଧହୁଏ ଇଙ୍ଗୀତ କରିବାକୁ ଚାହୁଁଥାଆନ୍ତି, ମୁଁ ମୋର Merit basisରେ ହୋଇଛି ଆଜି ଏହି ପଦବୀରେ ଅବସ୍ଥାପିତ।" ଆଜି ଶୁଣୁଛି ଲୋକସେବା ଆୟୋଗର ଚାରି ବର୍ଷ ଦୁଇମାସ ମାଆଙ୍କ ସଦସ୍ୟତା ମାଆଙ୍କୁ ଆଣିଦେଇଥିଲା ଖ୍ୟାତି ତାଙ୍କର ନିଷ୍ପାପରତା, ସଚ୍ଚୋଟତା ଓ ନମ୍ରତା ପାଇଁ।

ମାଆଙ୍କର ଶ୍ୱାସରୋଗ ଚିକିତ୍ସା ପାଇଁ ଅଭିନୟ ପ୍ରୟାସ ଆଜିବି ଆମମାନଙ୍କୁ ଆଚମ୍ବିତ କରିଥାଏ । ଏହି ପ୍ରାକୃତିକ ଚିକିତ୍ସା ଛାଡ଼ିବାର ପ୍ରାୟ ପଚିଶ ବର୍ଷ ହେଲାଣି । ଆଶ୍ଚର୍ଯ୍ୟର କଥା ଆଜିବି ମଧ୍ୟ ଲୋକ ଆସନ୍ତି ମାଆଙ୍କର ସେହି ଚିକିତ୍ସା ପାଇଁ । କହିବାକୁ ଗଲେ ବିଗତଦିନ (ପ୍ରାୟ ୪୫ ବର୍ଷ ତଳେ) ମାଆଙ୍କର ଉଦ୍ୟମ ଓ ବାପାଙ୍କର ଦୃଢ଼ ପ୍ରୋତ୍ସାହନରେ ଏହି ଚିକିତ୍ସା ଆରମ୍ଭ ହୋଇଥିଲା । ଉଦ୍ଦେଶ୍ୟ ବିନା ମୂଲ୍ୟରେ ଗରିବ କିମ୍ବା ଅସହାୟ ଲୋକମାନଙ୍କର ଶ୍ୱାସରୋଗୀ ଚିକିତ୍ସା । ଗୋଟାଏ ପ୍ରକାର ଗଛର ଔଷଧୀୟ ଗୁଣର ମହତ୍ୱକୁ ନେଇ ବର୍ଷ ବର୍ଷ ଧରି ଅନୁଧ୍ୟାନ ଏବଂ ଶେଷରେ ତା'ର ସଫଳ ପ୍ରୟୋଗ । ପିଲାଦିନେ ଦେଖିଛି ପ୍ରତ୍ୟେକ ତିନି ମାସରେ ପାଞ୍ଚ ସାତଦିନ ଧରି ଚିକିତ୍ସା । ରାତି ତିନିଟାରୁ ଉଠିବା ଓ ତା'ପରେ ଗଛର ପତ୍ର ତୋଳିବା । ଭୋର ୪.୩୦ ମିନିଟ୍ ଶହ ଶହ ଲୋକଙ୍କ ଆମ ଘର ଆଗରେ ସମାଗମ । ଚିକିତ୍ସା ସେହି ପତ୍ର ପାନ କରିବା ପାଇଁ ଏବଂ ତା' ପରେ ପତ୍ର ଓ ଅନ୍ୟାନ୍ୟ ଜିନିଷକୁ ନେଇ ତିଆରି ପାନୀୟ ଔଷଧକୁ ସେବନ । ଚିକିତ୍ସା ସରିବା ଦିନ ବିଦାୟ ନେବା ସମୟରେ ସେମାନଙ୍କ ଲୁହଭରା କଣ୍ଠରେ ମାଆ ଓ ବାପାଙ୍କୁ କୃତଜ୍ଞତା

ଜ୍ଞାପନ । ମାଆ ଦିନତମାମ ପରିବାର, ଘରେ ରହୁଥିବା ଓ ପହଞ୍ଚୁଥିବା ଅତିଥିମାନଙ୍କର କଥା ବୁଝିବା କଲେଜ, କଲେଜରୁ ଫେରି ବଗିଚା କାମ କରିବା, ରାତି ୧୨ଟାରେ ଶୋଇ ପୁଣି ରାତି ୩ଟାରେ ଉଠି ଉତ୍ସାହର ସହ ଶ୍ୱାସରୋଗୀଙ୍କ ପାଇଁ ଚିକିତ୍ସା ପ୍ରକ୍ରିୟା ଆରମ୍ଭ ହୋଇ ଏକ ଆଜି ଅବିଶ୍ୱସନୀୟ ଲାଗିଲେ ବି ସତ ।

ଏହିପରି ଆହୁରି ବହୁତ କଥା ମୋ' ମାଆଙ୍କ ବିଷୟରେ ଲେଖିବା ପାଇଁ ମୁଁ ବ୍ୟଗ୍ର । କିନ୍ତୁ ସମୟର ତାଗିଦ୍ । ସ୍ୱଳ୍ପ ସମୟ ଭିତରେ ଅନ୍ୟାନ୍ୟ କାମ କରିବାକୁ ଅଛି । ଏତିକିରେ ଶେଷ କରିବି । ମୋର ମାଆ ଗଢ଼ା ଏକ ଭିନ୍ନ ଉପାଦାନେ । ସେ ଅନନ୍ୟା ।

◆◆◆

# ମୋ' ମାନା ଡୁଙ୍ଗୁରି ପାଇଁ ...

## (୩୫ ବର୍ଷ ତଳର ସ୍ୱରଚିତ କବିତାରୁ କିଛି)

ମନେପଡ଼େ ଆଜି ଅବକାଶବେଳେ
ହେ ଖୋଖ୍ନା ! ତୁମ କୃତିତ୍ୱ ସାଧନା ।
ଏ ଭୂଇଁ ପରେ ଜନ୍ମିଥିଲ ଦିନେ
ଏଇ ବନମାଟି ଏଇ ପରବତ
ଏଇ ଝରଣାର ଝର ଝର ନାଦ
ତୁମକୁ ଛୁଇଁଛି ଅନ୍ତରଭରି
ସବୁ ପୋଛିଦେଲ ମନୁ
ଅଭିମାନ କଲ ଏଇ ମା'ଟିକୁ
ତୁମ ଗାରିମାକୁ ନ ବୁଝିଲା ଦିନେ
ନେହୁରା ହୋଇଛି - ଶୁଣିନ ଏ ଦେଶ ।
ଏ ଦେଶବାସୀ ଅଭିଶପ୍ତ
ହରାଇ ବସିଲା ଏକ ବିଜ୍ଞାନୀ - ସେ ଯେ ମହାବିଜ୍ଞାନୀ
ବିଶ୍ୱକୁ ଦିନେ ଯେ ଛୁଇଁଲା ସମସ୍ତେ
କାଉଁରି ପରଶେ କମ୍ପିଲେ ସମସ୍ତେ
ଫିଟାଇଲ ତୋର ଅନ୍ଧପୁଟଳିକୁ
ଉଦୀପ୍ତ କଲା ଯେ ଆଲୋକ ଶିଖାକୁ
ସେ ଯେ ହେଲା ପରବାସୀ
ଆମ ସନ୍ତାନର କୀର୍ତ୍ତୀ ଦୁନ୍ଦୁଭି
ଶୁଣି ହେଲୁ ଆମେ ତୃପ୍ତି ।
କିନ୍ତୁ ଖୋରାନା । ମନେରଖ-
ଏବେ ବି ବହୁଛି ତମ ଧମନୀରେ
ଭାରତୀୟ ଲହୁ ଭାରତୀୟ 'ଜିନ୍'
ଯେଉଁ 'ଜିନ୍' ଘେନି ରଚୁଛ ସନ୍ଦର୍ଭ
ଦିନରାତି ଲାଗି ଗଢୁଛ ସଉଧ
ସେ କି ମନେ ପଡ଼େ ତୋରେ ।

'ଜିନ୍' ନେଇ ଯେଉଁ ଚରିତ୍ର ରଚିତ
କୁହ ତମେ ପରା ହେ ବିଜ୍ଞାନୀ ସାଧକ !
ଲହୁ ମାଧମରୁ-
'ଜିନ୍' ଇଟା ସବୁ ଗୋଟାଇ ଗୋଟାଇ
ଗଢୁଛ ଡ୍ୟାମ୍, ଅଟ୍ଟାଳିକା ଆଦି
ନୂତନ ହର୍ମ୍ୟ ପୁଣି କେତେ ବେଳାଭୂଇଁ -

ବେଳାଭୂଇଁ-
ସେ ଯେ ନୁହେଁ ଖାଲି ଚଲାପଥ
ଦେଇଛି ମା'ରେ ନବ ଜୀବନିକା
ପଣ କରି ଗଢ଼ିବ ଆଶାର ମଣିଷ ଦୁନିଆରେ
ସୃଷ୍ଟି ହେବେ ପୁଣି ବହୁ ବିଜ୍ଞ, ଡାକ୍ତର ଶିକ୍ଷକ
ଇଞ୍ଜିନିୟର ଆଦି କେତେ ମେକାନିକ୍
କେତେ କେତେ ଯୋଦ୍ଧା ବୀର ସୈନିକ
ତୋଳିବ ଭାଙ୍ଗିବ ଗଢ଼ିବ କୋଣାର୍କ
ଚୂଡ଼ାନ୍ତ ଦେବ ସେ ଭାବିଛି 'ଧରମା' (ଖୋରାନା)
ଲିପିବଦ୍ଧ ହୋଇ ରହିବି ସ୍ୱର୍ଣ୍ଣାକ୍ଷରେ
ଗାଉଥିବ ଗାଥା ଯୁଗ ପରେ ଯୁଗ
ଇତିହାସ ଚକ ଗଡ଼ି ଚାଲିଥିବ -
ପ୍ରଶ୍ନ ପରେ ପ୍ରଶ୍ନ ଉର୍ମିମାଳା ସମ
ଉଙ୍କିମାରେ ଏ ମନେ
ଭାବପ୍ରବଣ କ୍ରୀତଦାସ ପରି ମାନିନିଏ
ପଚାରେ ପ୍ରଶ୍ନ ଏକଇ ପ୍ରଶ୍ନ ତୋରେ ।
ଭାରତୀୟ - ମା' ଜନ୍ମମାଟି
କିଏ ସେ 'ଖୋରାନା' କିଏ ସେ ଧରମା ?
ଅନୁରୂପ ପ୍ରଶ୍ନ ଉଠେ କି ସେ ଦେଶେ
ନର ନାରୀ ଯେତେ ଆବାଳବୃଦ୍ଧ ମନେ
କିଏ ଏ 'ଖୋରାନା' ଦେଶୀ ବା ବିଦେଶୀ

ଏକ ଦିଗେ 'ଜିନ୍' ଆର ଦିଗେ ପରିବେଶ
ସୃଷ୍ଟି କରେ କି ଇନ୍ଦ୍ରଧନୁର
ସପ୍ତରଙ୍ଗରେ ତରଙ୍ଗମାଳା
ଲିଭି ଲିଭିଯାଏ - ସେ ମଣିଷଟିରେ ଖୋଜନାରେ ।
ପୁଣି କହେ -
ତମ ତଥ୍ୟ ସ୍ପର୍ଶେ ଝଟକିବ ମନ
ବୃଦ୍ଧ ପାଇବଟି ନବ ଯଉବନ
ମୁମୂର୍ଷୁ ମଣିଷ ଶଯ୍ୟା ତ୍ୟାଗ କରି
ଝାଡ଼ି ଝୁଡ଼ିହୋଇ ଶିକ୍ଷା ଦେବ ।
କ୍ୟାନସର, ବହୁମୂତ୍ର, ଲ୍ୟୁକୋମିଆ, ଥାଲାସାମିଆ
ଯେତେ ଯେତେ ମାରାତ୍ମକ ରୋଗ
ଭୟଭୀତେ ଆଜି ତଟସ୍ଥ ମଣିଷ
ତାକୁ ଆଜି ସୁଧାରିବ ବୋଲି
ସଂକଳ୍ପ କରିଛି ତମ ସନ୍ଦର୍ଭରେ ?

ହିସାବ, ନିକାଶ ଅଙ୍କ କଷି କଷି
ବିଜ୍ଞାନ ମେଡାଲ ତଥ୍ୟ ରଖି ଆଣ
ସ୍ୱପ୍ନେ ବା ଜାଗ୍ରତେ ଦେଖୁଅଛ କିବା
ନିର୍ମୂଳ କରିବ ମାରାତ୍ମକ ରୋଗ
ତମ ନୂତନ ତଥ୍ୟ ନିହାଣରେ

ହେ ବିଜ୍ଞାଣି !
ତମ ନିହାଣ ମୂନରେ ରହିଛି ଶକ୍ତି
ସେ ଶକ୍ତି ପାଇଛ ବାପ ଅଜା ଔରସରୁ
'ଜିନ୍' ପରା ତମ ରକ୍ତେ ରହିଛି
ଏ ଦେଶ ମାଟିରେ ଜନ୍ମ ହୋଇଛି

ଏଣୁ-ତମେ ଆଜି ଅବା ମାନ ବା ନ ମାନ
ଏ ଦେଶ ଭୂଇଁର କାଉଁରୀ କାଠିର ସ୍ପର୍ଶେ
ଭୂମିଷ୍ଠ ହେଲ ଦିନେ
ହାତୀ ଚାଲିଯାଏ ଏବନୁ ସେ ବନ
ମହାବିବସ୍ତରେ କିଆକଣ୍ଟା ଖାଇ
ଝୁଲି ଝୁଲି ରହିଯାଏ
କିନ୍ତୁ ସେ ମାହୁନ୍ତ ଚିହ୍ନଟ କରଇ
ଏ ଯେ ପାଟହାତୀ ମହାରାଜାଙ୍କର
ଝୁଲୁଥାଉ ଯେଉଁ ବନେ
ସେହି ସମ ତମେ ଖୋରାନା ବିଜ୍ଞାନ
ନୋବେଲ ପୁରସ୍କାର ଧାତ୍ରୀ ହେ ମହାପୁରୁଷ
ରୁହ ପଛେ ତମେ ଯେଉଁ ବିଦେଶରେ
ଆମେ ଗର୍ବ କରୁ ତମେ ତ ଆମର
ତେଣୁ-
ଆମ ଦେଶ ମୂର୍ଖ ବର୍ବର ଜାଳି ଯେତେରେ
ଅର୍ପଣ କରୁଛୁ ଆମ ଶ୍ରଦ୍ଧାର ଅଞ୍ଜଳି
ଆମ ଆୟୁ ପରମାଣୁ ଯେତେ
ମିଶୁ ତମ ରକ୍ତ ଧମନୀରୁ ସ୍ରୋତେ
ଦୀର୍ଘାୟୁ ହୁଅ ହେ ଭାରତୀୟ ଜିନ୍ ।
ବିଦେଶୀୟ ବାୟୁମଣ୍ଡଳ ଭିତରେ
ପରିବେଶ ନେଇ ଗଢ଼ିଉଠୁ ଆଜି ନୂତନ ଦିଗନ୍ତ
ତବ ସନ୍ଦର୍ଭ ଚହଳ ପକାଉ
ନୂଆ ତଥ୍ୟ ନୂଆ ବଇଭବ ।
ନିର୍ମୂଳ କରୁ ଏ ଦେଶ ଜରା, ପୀଡ଼ା ଯେତେ
ସତେଜ ହେଉ ଏ ମଣିଷ ଜୀବନ
ନବ ସମ୍ଭାରରେ ମଣ୍ଡିତ ହେଉ ତା' ମନପ୍ରାଣ ।
ଏକ ଦିଗେ ତମେ ଭାରତୀୟ 'ଜିନ୍'
ଅନ୍ୟ ଦିଗେ ତମେ ପରଦେଶ 'ପରିବେଶ'
ସମନ୍ୱୟ ହେଉ ତମ ଧମନୀରେ
ରଚୁ ତାରେ ଏକ ନବ ସମ୍ଭାରର ମେଳ ।

•••

# ହେ ଶକ୍ତି-

ତୁମ ପ୍ରଭାବରେ ପ୍ରଭାବିତ ହୋଇ
ପହଞ୍ଚିଲି ଏକ ଲକ୍ଷ୍ୟ
ପାରିଲିନି ତା'ରେ ପ୍ରବାବିତ କରି
ହୁଡ଼ି ବସିଛି ମୁଁ କଣ ।
ତୁମ ଆଶିଷରେ ପଥ ମୁଁ ଚାଲିଛି
ହୋଇନାହିଁ ବାଟବଣା
ମୋ' ଆଶିଷ କିଆଁ ନ ଲାଗିଲା ତା'ରେ
ଲୋଡ଼େ ସେ ତମ କରୁଣା ।
ଦୁନିଆର ବୋଝ ମୁଣ୍ଡାଇଲି ମୁହିଁ
ତୁମ ଶକ୍ତି ନେଇ ଯେତେ
ମୋ' ଶକ୍ତି କିଆଁ ଲାଗୁ ନ ହୋଇଲା
ତା' ହୃଦ,ପରାଣେ ତେବେ ?
ଇନିବିନି କେତେ ଜୀବ ଜୀଇଁଛନ୍ତି
ଏ ଭବ ଭୂଇଁ ତଳେ ।
କେଉଁ ବଡ଼ିମାରେ ବୋଲାଇବି ମୁହିଁ
ମଣିଷ ଏ ବିଶ୍ୱ କୋଳେ ?
ଧିକ୍ ମୋ' ଜନମ, ଧିକ୍ ମୋ' ପରାଣ
ଧିକ୍ ମୋ' ମଣିଷ ପଣ
ନ ସୁଧୁରିଲି ଯେବେ ଭୁଲ ଭଟକାରୁ
ହେ ମୋ' ଆତ୍ମୀୟ ଜନ ।
ଚାହେଁ ନାହିଁ ମୁହିଁ କଳୁଷିତ କରି
ବଞ୍ଚିବି ଏ ଧରଣୀ ତଳେ
ନିର୍ବାଣ କର ହେ ମୋର ଏ ଆତ୍ମା
ମହା ସମୁଦ୍ର କରାଳ ରୋଳେ ।
ତେବେ ଅବା ତା'ରେ ଚେତନା ପଶିବ
ଜୀବନର ଯେତେ ଶିକ୍ଷା
ପହଞ୍ଚିବ ପରା ଲକ୍ଷ୍ୟସ୍ଥଳେ ତା'ର
ସେଇ ହେବ ତା'ର ଦିଶା ।



## ଶ୍ରଦ୍ଧାଞ୍ଜଳି

ମାନନୀୟେସୁ !

ନମସ୍କାର । ମାଉସୀ (ପ୍ରଫେସର କମଳ କୁମାରୀ ପଟ୍ଟନାୟକ)ଙ୍କ ପରଲୋକ ଖବର ଜାଣି ଦୁଃଖିତ ଓ ମର୍ମାହତ । କେବଳ ଶିକ୍ଷାକ୍ଷେତ୍ରରେ ନୁହେଁ । ସାମାଜିକ, ପ୍ରଶାସନ କ୍ଷେତ୍ରରେ ଥିଲା ତାଙ୍କର ଅବଦାନ । ବିଜ୍ଞାନକୁ ସାଧାରଣ ଲୋକଙ୍କ ନିକଟରେ ପହ ।ଇବା ଲକ୍ଷରେ ଓଡ଼ିଆ ଭାଷା ଇତ୍ୟାଦି ସହଜ ସାବଲୀଳ ଭାଷାରେ ଲେଖୁଥିଲେ । ତାଙ୍କୁ ହରାଇ ଆମେ ସମସ୍ତେ ଦୁଃଖିତ । ଏ ଦାରୁଣ ଦୁଃଖ ସହ୍ୟ କରିବା ନିମି  ପ୍ରଭୁ ଜଗନ୍ନାଥ ଆପଣଙ୍କୁ ଅସୀମ ଧୈର୍ଯ୍ୟ ଓ ଶକ୍ତି ପ୍ରଦାନ କରନ୍ତୁ । ଶୋକସନ୍ତପ୍ତ ପରିବାରବର୍ଗଙ୍କୁ ସମବେଦନା ଜଣାଇବା ସହ ପରଲୋକଗତ ଆତ୍ମାର ସଦ୍‌ଗତି କାମନା କରି ରହୁଛି ।

ସମ୍ମାନର ସହ

**ରବି ରଞ୍ଜନ**

ସଭାପତି, କଟକ ମହାନଗର ନାଗରିକ ମହାସଭା
ଚାନ୍ଦିନୀଚୌକ, କଟକ - ୭୫୩୦୦୨
ଦୂରଭାଷା : ୦୬୭୧-୨୫୦୭୮୬ (ନିବାସ)
ଭ୍ରାମ୍ୟଭାଷ : ୯୪୩୭୩-୧୦୧୭୧

## କମଳ ଅପାଙ୍କ ସ୍ମୃତିରେ

କମଳ ଅପା, ତମରି ପ୍ରେରଣାରେ ପ୍ରେରିତ ହୋଇ ମୁଁ ତମର ପ୍ରଥମ ଚଷ.ଯ ୱଷଙ୍କଯରଭଷ ଭାବେ ନାମ ପଞ୍ଜିକରଣ କରିଥିଲି, ତମେ ଆଉ ଗିରିଜା ଭାଇ, ଉଭୟେ ମତେ କେତେ ଉତ୍ସାହିତ କରିଥିଲି, ସେ କଥା ମୁଁ ହିଁ ଜାଣେ । ତମର ସାହାଯ୍ୟ ଓ ସହାନୁଭୂତି ନଥିଲେ ହୁଏତ ମୁଁ ମୋର କାମ ସମ୍ପୂର୍ଣ୍ଣ କରିପାରି ନଥାନ୍ତି । ତମେ କେବଳ ମୋର ଶଙ୍କଯଯର ନଥିଲ, ଆମେ ଥିଲେ ସହକର୍ମୀ । ତମେ ମୋ' ବଡ଼ଭଉଣୀର ସ୍ଥାନ ନେଇଥିଲ । ଗିରିଜା ଭାଇ ଗଲାବେଳେ ଯେତେବେଳେ ମୁଁ ଆସିଥିଲି, ତମେ ନିର୍ବାକ ଥିଲ । ବହୁତ ଦୁଃଖ ଲାଗିଥିଲା । ସବୁ ଭଗବାନଙ୍କର ନିର୍ଦ୍ଦେଶ । ତମେ ଆଜି ମରଶରୀରରେ ନାହଁ, କିନ୍ତୁ ମୋ' ହୃଦୟରେ ସବୁଦିନ ପାଇଁ ରହିବ । ତମର ଅମର ଆତ୍ମା  ଆଜି ଯେଉଁଠି ବି ଥିବ, ଭଗବାନଙ୍କର ଆଶୀର୍ବାଦ ରହିବ ।

**- ଦ୍ଧା ନବାଜା ପଟ୍ଟନାୟକ**

◆◆◆

ଶ୍ରୀମତୀ ଡଃ କମଳ କୁମାରୀ ପଟ୍ଟନାୟକ କେବଳ ମୋର ସମ୍ମାନନୀୟା ଶିକ୍ଷୟିତ୍ରୀ ନଥିଲେ । ସେ ଥିଲେ ମୋର ସ୍ଥାନୀୟ ଅଭିଭାବିକା (ଖକ୍ଷମବଷ ଏଙ୍କବଙ୍କଯବବଭ) । ଶୈଳବାଳା ମହିଳା କଲେଜରେ ଦୀର୍ଘ ୪ ବର୍ଷ ଧରି ଅଧ୍ୟୟନ କରୁଥିବା ସମୟରେ ସେ ମୋତେ ସେହି ଦୃଷ୍ଟିରେ ଦେଖୁଥିଲେ । ସେ ଦୁଇଜଣ ପ୍ରାତଃ ସ୍ମରଣୀୟ ଗିରିଜା ଭୂଷଣ ପଟ୍ଟନାୟକ ଏବଂ କମଳ ଅପା । କଲେଜ ଛାଡ଼ିବା ପରେ ଘଟଣା ଓ ସମୟକ୍ରମେ ମୁଁ ସେ ପରିବାର ସହିତ ଓତଃପ୍ରୋତଃ ଜଡ଼ିତ ହୋଇ ପଡ଼ିଥିଲି । ପାକୁ ଭାଇ ଥିଲେ ଅନେକ ସମୟରେ ମାର୍ଗଦର୍ଶୀ । ତାଙ୍କରି ପ୍ରେରଣାରେ ମୁଁ ଅନେକ କାମ କରିପାରିଛି । ତୁମ ଦୁଇଜଣଙ୍କର ସ୍ନେହ, ଶ୍ରଦ୍ଧା ଓ ସଦିଚ୍ଛା ଏଯାବତ୍ ଯେତେ ଆନ୍ଦୋଳିତ କରି ରଖିଛି । ଜଣେ ଆଗରୁ ଚାଲିଯାଇଥିଲେ । ଆଜି ଜଣେ ଚାଲିଗଲେ । ମୋର କେତେଜଣଙ୍କୁ ଜୀବନର ଶେଷ ପର୍ଯ୍ୟନ୍ତ ଭୁଲି ହେଉନାହିଁ - ସ୍ମୃତି ପଟରେ ସବୁବେଳେ ଉଙ୍କି ମାରୁଥାଆନ୍ତି - ସେମାନଙ୍କ ମଧ୍ୟରେ ପାକୁ ଭାଇ ଓ କମଳ ଅପା ଅନ୍ୟତମ । ଆଜି ତାଙ୍କର ମରଶରୀର ଉପରେ ପୁଷ୍ପମାଲ୍ୟ ଦେଇ ତାଙ୍କର ଋଣ ଶୁଝିବାକୁ ଚେଷ୍ଟା କଲେ ମଧ୍ୟ ପାରିବି ନାହିଁ । ମୁଁ ତୁମକୁ ବେଶି ସମୟ ଦେଖା କରିବାକୁ ଆସିପାରିନାହିଁ - ସେଥିପାଇଁ ମୋତେ କ୍ଷମା ଦେବ ।

ତୁମର ସେହ୍ନାନୁରାଗ

ଶୈଳ





**କମଳ ଖୁଡ଼ୀଙ୍କ ପାଇଁ ପଦେ -**

ଆପଣଙ୍କର ଅମାୟିକ ନିଷ୍କପଟ ବ୍ୟବହାର ଏବେଠାରୁ ଅଭାବ ହେବ । ଏତେ ସାତ୍ତ୍ୱିକ ଓ ଶାଶ୍ୱତ ଚିନ୍ତାଧାରାର ବ୍ୟକ୍ତିତ୍ୱ ଆଉ ଦେଖିବା ସମ୍ଭବପର ନୁହେଁ । ଆପଣଙ୍କ ପବିତ୍ର ଆତ୍ମା ଶାନ୍ତିରେ ଥାଉ ।

ଆପଣଙ୍କର
ପୁତୁରା ଓ ପୁତୁରାବଧୂ
ନୀଲୁ ଓ ସନ୍ଧ୍ୟା
ଅନୁଗୁଳ

◆◆◆

କମଳ ଅପା କେତେ ଭଲ ପାଉଥିଲେ ମୁଁ ତାହା ବର୍ଣ୍ଣନା କରିପାରିବିନି । ତାଙ୍କ ଅନ୍ତର ଭିତରର ଭଲପାଇବା ଆମ ପାଇଁ ଆଶୀର୍ବାଦ ଥିଲା । ମୋ' ଜୀବନର ଶେଷପର୍ଯ୍ୟନ୍ତ ମୁଁ ତାଙ୍କୁ ଭୁଲିପାରିବିନି । ଅପାଙ୍କୁ ଅନ୍ତରଭରା ଅଶ୍ରୁ ସହିତ ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ।

ବୁନି
ତୁଳସୀପୁର

◆◆◆

Memoriam

Dr. (Mrs.) Kamala Kumari Patnaik was a brilliant professor and an outstanding scientist and a very rare personality. She is an alumni who added fame to Ravenshaw College with her brilliant academic and professional endeavours. Her devotion to teaching has inspired many students as well as teachers. She had a charming personality, very affectionate, friendly and compassionate. You will always be remembered by the families of Botany Department of Ravenshaw University.

I pay my homage to my beloved teacher. Let her soul rest in peace.

Dr. L. K. Bose
Principal Scientist, ICAR-NRRI, Cuttack

◆◆◆

Kamala apa,

You were in critical condition for two years. Kunipua is taking care of you all the time. Itwas a full time job for him, 24x7. Though ill, you were in our mind's eye all the time. We would miss tha now. Death, though anticipated, when it finally arrives, shatters everything. It is so difficult to express our feelings, so difficult to bear.

You were a liberated soul by all accounts, a brilliant student, a successful and caring professor, an ideal wife, mother and overall a very good human being with care and concern for all and matter towards none. You will be mined dearly by all who come in contact with you

May your departed noble soul rest in peace. Om Shanti.

Muna & Ali

◆◆◆



## କମଳ ଅପାଙ୍କ ସ୍ମୃତିରେ

ନମସ୍କାର କମଳ ଅପା,

ଆଜି ଯେ ସମ୍ମୁଖରେ ବସି ଅତୀତକୁ ବହୁ ନିକଟରୁ ଦେଖୁଛି । ତୁମେ ତ ମୋର କେବଳ ପ୍ରଫେସର ନଥିଲ, କେବଳ ମୋର ମାର୍ଗଦର୍ଶିକା ନଥିଲ, କେବଳ ମୋର ବଡ଼ ଅପା ନଥିଲ, ମୋର ସବୁକିଛି ଥିଲ । ଅପା ବୋଲି ଡାକୁଥିଲି ହେଲେ ମା'ର ସ୍ନେହ ସବୁ ମୁହୂର୍ତ୍ତରେ ଅନୁଭବ କରୁଥିଲି । ମୋ' ଜୀବନର ସମସ୍ତ (discussion) ବେଳେ ମୋର ଗିରିଜା ଭାଇ ଏବଂ କମଳ ଅପା । ଯେତେ କଷ୍ଟ ସମୟ ହେଉ ତାଙ୍କୁ କହିଦେଲା ପରେ ସବୁ କିଛି ଯେମିତି ସରଳ ହୋଇଯାଏ । ସହଜ ହୋଇଯାଏ । ତାଙ୍କ ଉପଦେଶ ମୋ' ଜୀବନର ସବୁ କାର୍ଯ୍ୟରେ ଆଗକୁ ନେଇଯାଏ । ମୁଁ ତମପାଇଁ କିଛି କରିପାରିଲି ନାହିଁ ଅପା । ଏତେ ସ୍ନେହ, ଏତେ ଭଲ ପାଇବା ତମଠାରୁ କେହି ଶିଖିବ । ମନେ ପଡୁଛି ମୋ' ବାହାଘର କଥା – ତମର ସବୁତକ ଗହଣା ପିନ୍ଧାଇ ନୂଆ ଶାଢ଼ୀ ପିନ୍ଧା ଆଉ ଥରେ ମୋତେ ଚନ୍ଦନ ଟୋପା ଲଗାଇ ଦାସ ବାବୁ (Photographer)ଙ୍କୁ ଡକାଇ ଫଟ ଉଠାଇବାଠାରୁ ନେଇ ମୋ' ଝିଅ ହେଲାବେଳେ Medicalରେ ପୂରା ଜଗିବସି ମୋ Sense ଆସିବା ପର୍ଯ୍ୟନ୍ତ ମୋ' ପାଖେ ପାଖେ ଥିବା କିଛି ଭୁଲିନାହିଁ ମୁଁ । ଭୁଲିପାରିବି ନାହିଁ । ମୁଁ ତମ ଅବର୍ତ୍ତମାନରେ ଭଗବାନଙ୍କୁ ପ୍ରାର୍ଥନା ମୋ' ଅପା ଏଠି ଯେମିତି ରହି ସମସ୍ତଙ୍କ ଦୁଃଖସୁଖରେ ସାଥି ହୋଇଥିଲ। ସେଠି ମଧ ଭଗବାନ କଷ୍ଟ କାର୍ଯ୍ୟରେ ତୁମର ସହାୟକ ହେବେ। ମୋ' ଭାଇ ଓ ଅପାଙ୍କୁ ସବୁଠାରୁ ସୁନ୍ଦର ଦୁନିଆଁ ମିଳୁ, ଏତିକି ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା ।

ତମର ସ୍ନେହ କଙ୍ଗାଳି
ସାହାନାଜ୍

◆◆◆

କମଳ ଅପା,

ଆମକୁ ସବୁ ଛାଡ଼ି ଚାଲିଗଲ । ଭଗବାନ ତୁମକୁ ଭଲ ପାଆନ୍ତି ବୋଲି ଏତେ ଶୀଘ୍ର ଆମ ସମସ୍ତଙ୍କଠାରୁ ଛଡ଼ାଇନେଲେ । ତୁମକୁ ମୋର ଶତ ପ୍ରଣାମ ।

ପ୍ରିୟମ୍ବଦା ମହାନ୍ତି
ହେଜମାଦି

◆◆◆

Madam,

ମୋର ଗୁରୁ ହେଲେ ବି କମଳ ଅପା ଭାବୁଥିଲି । ପାଠ ପଢ଼ିଥିଲି ଆପଣଙ୍କ ପାଖରେ । ଚାକିରି କରିଥିଲି ଆପଣଙ୍କ ସାଙ୍ଗରେ । କେତେ ଗେହ୍ଲା କରୁଥିଲେ । ଆମକୁ ଛାଡ଼ି ଚାଲିଗଲେ । ଭଗବାନଙ୍କ ଠାରେ ପ୍ରାର୍ଥନା ଆପଣଙ୍କ ଆତ୍ମା ଶାନ୍ତିରେ ରହୁ ।

ଭାରତୀ ବେହେରା

◆◆◆

Kamal Madam,

ମ୍ୟାଡ଼ାମଙ୍କ ସହିତ ଅନେକ ସ୍ମୃତି । ଅନେକ ଅନୁଭୂତି । ୧୯୯୦ ମସିହାରେ ରେଭେନ୍ସା ପ୍ରଫେସର ଥିବାବେଳେ ମୁଁ ସର୍ବକନିଷ୍ଠ ଶିକ୍ଷକ ଭାବେ ଯୋଗଦେଇଥିଲି । କେତେ ସ୍ନେହ, କେତେ ଆଦର ତାଙ୍କର । 'କୁନିପୁଅ' ସହିତ ମୋ' ବନ୍ଧୁତ୍ୱରକବଜନରର ସମସ୍ୟା ଥିବାରୁ ସେ ବହୁତ ଆଦର କରୁଥିଲେ । ଅନେକ ଅନୁଭୂତି । କି ନିଷ୍କପଟ ସ୍ନେହୀ ମଣିଷ ଥିଲେ ସେ । ସବୁ କହି ବସିଲେ ପୋଥିଟିଏ ହେବ ନିଶ୍ଚୟ । ଭଗବାନଙ୍କ ପାଖରେ ଏତିକି ପ୍ରାର୍ଥନା ତାଙ୍କର ଅମର ଆତ୍ମା ଶାନ୍ତିରେ ରହୁ । ତାଙ୍କ ପରିବାରବର୍ଗଙ୍କୁ





ଭଗବାନ ଅସୀମ ଶକ୍ତି ଦିଅନ୍ତୁ ଏ କଷ୍ଟକୁ ସହ୍ୟ କରିବା ପାଇଁ । ଓଁ ଶାନ୍ତି ।

ପଦନ କୁମାର ଜେନା
ରେଭେନ୍ସା ବିଶ୍ୱବିଦ୍ୟାଳୟ

◆◆◆

Kamal Madamଙ୍କୁ ମୋର ପ୍ରଣାମ । ତାଙ୍କର ଆତ୍ମା ଶାନ୍ତିପ୍ରାପ୍ତ ହେଉ । ପରିବାରବର୍ଗଙ୍କୁ ଈଶ୍ୱର ଧୈର୍ଯ୍ୟ ପ୍ରଦାନ କରନ୍ତୁ । ମୁଁ ତାଙ୍କର ଛାତ୍ରୀ ବୋଲି ଗର୍ବିତ । Madamଙ୍କୁ କୋଟି ପ୍ରଣାମ ।

ଡଃ. ବନ୍ଦନା ପାଠକ
ଶୈଳବାଳା ମହିଳା ମହାବିଦ୍ୟାଳୟ, କଟକ

◆◆◆

Dear Kamala Mausi,

End of an Era. Odisha will miss a great teacher. I still remember you during our Revenshaw Days.

affectionately Miti

◆◆◆

I wish I could have been a son to a great mother like her. Finally I had lost my natural mother at the age of eleven, I have worshiped and adopted is my spirit a few Goddess like women. But still I have the craving to have a mother like her in my next birth.

Debu Mohanty

◆◆◆

Kamala Mausi,

She was a very lovable person with her ever smiling face and soft words.

Mama.

◆◆◆

Kamala Mausi and Mausa were close Friends of my Father & Mother. Had some sweet memories of her both at Cuttack, Bhubaneswar and Vasant Kunj, New Delhi. Very loving and affectionate great scholar and good at experimentation on plants.

Punyaslok

◆◆◆

End of an era. In the year 2005, I met Girija uncle and Kamala aunty for the first time. It took almost a month to know them who they really are. Both were famous in their respective fields. I was really fortunate to converse with them one to one many time. They are simplest to the core and their affection to others was never compromised. People like them are very few and they will always be in our memory. Long live Kamla aunty ! Their certainly end of an era.

Sibasis Mohanty (Friend of Byapti)

◆◆◆

To us she was " Kamala apa" a beautiful person so affectionate. Our childhood was spent adoring her. An inspiration to all she was a great personality. We bow to you with all our love.

Rita, Jeela, Kitty

◆◆◆

I was associated with the Universe in my school days. It is shocking to find that Prof. Kamala K Patnaik has left us. My condolence levels for the bereaved Family. May be Nobel soul rest in peace.

-Bhabani S. Chayani
Collector, Cuttack

◆◆◆

She was my teacher.
She was my Goddess.
May the Departed soul.
Live in peace in her Heavenly Abode.

Bijay Kumar Khandayatray
ADM, Cuttack

◆◆◆

Kamala Mausi,

Your love and affection is eternal. Your help to others will be for ever. Your blessings will be helpful for our whole life. I pray God for your soul to rest in peace.

Durgesh.

◆◆◆

## ସ୍ନେହର ଓ ଶ୍ରଦ୍ଧେୟ କମଳ ମାଉସୀ

ତୁମର ସ୍ନେହବୋଲା କଥା ଓ ସ୍ମିତହସଭରା ମୁହଁ ସବୁଦିନେ ମନେ ରହିବ । ଅବଶୋଷ ରହିଥିଲା ଶେଷ କିଛି ବର୍ଷ କଥା ହୋଇପାରିଲିନି । ତୁମେ ସ୍ୱର୍ଗରେ ଶାନ୍ତିରେ ରୁହ ଓ ମୋତେ, ଅନି, ବାଗ୍ମୀ ଓ ଅଭୀପ୍‌ସାକୁ ସେଠାରୁ ଆଶୀର୍ବାଦ କରୁଥାଅ ।

ଗଭୀର ପ୍ରଣାମ ସହ
ଟିଟି ଓ ବାଣୀ

◆◆◆

କମଳ ମ୍ୟାଡ଼ାମ୍‌ଙ୍କ ସହ ମୋର ବହୁଦିନୁ ପରିଚୟ । ସେ ମୋର ଶିକ୍ଷୟିତ୍ରୀ ନ ଥିଲେ ମଧ ମୁଁ ତାଙ୍କୁ ମୋ' ଶିକ୍ଷୟିତ୍ରୀର ସମ୍ମାନ ଦେଉଥାଏ । ସେ ଥିଲେ ଜଣେ ଭଲ ମଣିଷ । ଅତ୍ୟନ୍ତ ସ୍ନେହୀ । ମୋ' ପ୍ରତି ତାଙ୍କର ଅଶେଷ ଶ୍ରଦ୍ଧା ଥିଲା । ତେଣୁ ସେ ମୋ' ସ୍ମୃତିରେ ବହୁବର୍ଷ ଧରି ଜୀବିତ ରହିଥିବେ । ମୁଁ ତାଙ୍କର ଅମର ଆତ୍ମାର ସଦ୍‌ଗତି କାମନା କରୁଛି ।

ବ୍ୟାପ୍ତି ବାବୁଙ୍କ ଭଳି ସନ୍ତାନ ସବୁ ବାପାମାଆଙ୍କୁ ମିଳନ୍ତୁ । ସେ କମଳ ମ୍ୟାଡ଼ାମ୍‌ଙ୍କର ଯେଉଁଭଳି ସେବା କରିଛନ୍ତି, ତାହା ଅନନ୍ୟ ।

ଡାକ୍ତର ନିତ୍ୟାନନ୍ଦ ସ୍ୱାଇଁ
ମୋ : ୯୪୩୭୭୬୬୧୧୭

◆◆◆

ଗଭୀର ଶ୍ରଦ୍ଧାଞ୍ଜଳି । ଆପଣଙ୍କ ଅମର ଅତ୍ମାର ସଦ୍‌ଗତି ନିମନ୍ତେ ଭଗବାନଙ୍କ ନିକଟରେ ମୋର ପ୍ରାର୍ଥନା ।

ସମୀର ପରିଡ଼ା

ମୋ : ୯୪୩୭୦୬୬୪୪୭

◆◆◆

ମା' ତାଙ୍କର ଜୀବନକାଳ ମଧ୍ୟରେ ଏତେ ପରିଶ୍ରମ କରିଥିଲେ ଯେ ଥକିପଡ଼ିଥିଲେ । ସେଥିପାଇଁ ସେ ବିଶ୍ରାମ ନେଇଥିଲେ । ତାଙ୍କର ପରିଶ୍ରମ ଦି'ୟୁନିଭର୍ସ ପାଇଁ ଅତ୍ୟନ୍ତ ସହାୟକ ଥିଲା ଯାହା କଳ୍ପନା କରାଯାଇ ନପାରେ ।

ବ୍ରଜମୋହନ ମହାପାତ୍ର

◆◆◆

ମୋର ପରମ ପୂଜନୀୟା ଓ ଶୁଭେଚ୍ଛୁ ପ୍ରଫେସର କମଳ କୁମାରୀ ପଟ୍ଟନାୟକଙ୍କ ବିୟୋଗରେ ମୁଁ ଅତ୍ୟନ୍ତ ମର୍ମାହତ । ଗିରିଜା ବାବୁ ଓ କମଳ କୁମାରୀଙ୍କ ସହିତ ମୋର ଦୀର୍ଘ ୪୦ ବର୍ଷର ଘନିଷ୍ଠ ସମ୍ପର୍କ ରହିଥିଲା । ଆଜି ତା'ର ଅବସାନ ଘଟିଲା । ଜଣେ ଲୋକପ୍ରିୟ ବିଜ୍ଞାନ ଲେଖିକା ତଥା ସମାଜସେବୀ ରୂପେ ସେ ବେଶ୍ ପ୍ରତିଷ୍ଠା ଅର୍ଜନ କରିଥିଲେ । ମୁଁ ସ୍ୱର୍ଗତ ଆତ୍ମାର ସଦ୍‌ଗତି କାମନା କରିବାସହ ଶୋକସନ୍ତପ୍ତ ପରିବାରବର୍ଗଙ୍କ ପ୍ରତି ସମବେଦନା ଜ୍ଞାପନ କରୁଛି ।

ଗୁଣମୁଗ୍ଧ

ସତ୍ୟ ରାୟ

◆◆◆

ଡ. କମଳ କୁମାରୀ ପଟ୍ଟନାୟକ ମୋର ମା' ସ୍ୱରୂପ ଥିଲେ । ତାଙ୍କର ଋଣ ତ ଏ ଜନ୍ମରେ ମୁଁ ଶୁଝିପାରିଲିନି । ତାଙ୍କର ଅମାୟିକ ସ୍ନେହ, ଶ୍ରଦ୍ଧା ମୋ' ଜୀବନରେ ବହୁତ କିଛି । ସେସବୁ ତ ମୁଁ ଭାଷାରେ ବ୍ୟାଖ୍ୟା କରିପାରୁନି । ମୋ' ସ୍ୱାମୀ ଶୁଭାଶିଷଙ୍କୁ ସେ ନିଜର ଝିଅଁପରି ଭଲ ପାଉଥିଲେ । ସେମାନେ ଦୁଇଜଣ କେବଳ ଆମ ପାଇଁ ନୁହେଁ ଏ ସଂସାରରେ ଯିଏ ବି ତାଙ୍କ ସଂସ୍ପର୍ଶରେ ଆସିଛନ୍ତି ସମସ୍ତଙ୍କ ପାଇଁ ତାଙ୍କ ଆଶୀର୍ବାଦ ବହୁତ ଆମକୁ ନେଇଯାଇଛି । ଆଜି ଯାହା ବି ମୋ' ଜୀବନରେ ପାଇଛି ସେସବୁ ସେମାନଙ୍କର ବରଦାନ । ତାଙ୍କ ଅମର ଆତ୍ମାର ସଦ୍‌ଗତି କାମନା କରୁଛୁ ।

ଶୁଭାଶିଷ ପଟ୍ଟନାୟକ

ଶୋଭାଗିନୀ ଅମାତ (ରୀନା)

◆◆◆

ନୂଆବୋଉ,

ମୋର ଚିରନମସ୍ୟ । ସେ ଜଣେ ଆଦର୍ଶ। ତାଙ୍କୁ ମୋର ଶତଶତ ପ୍ରଣାମ ।

ଜିତେନ୍ ପଟ୍ଟନାୟକ (ହାଡ଼ି)

◆◆◆

ମୋର ଚିରନମସ୍ୟ ମ୍ୟାଡ଼ମ୍

ଆପଣ ମତେ ବହୁତ ସାହାଯ୍ୟ କରିଛନ୍ତି । ଆପଣ ଚିରନମସ୍ୟ । ଆପଣଙ୍କୁ ମୋର ଶତଶତ ପ୍ରଣାମ ।

ଡଃ ପ୍ରସନ୍ନ କୁମାର ମିଶ୍ର

◆◆◆



ମ୍ୟାଡ଼ାମ୍

ଆପଣଙ୍କ ପାଇଁ ଦ୍ୱିତୀୟଥର ଆସି ପାରିଥିଲି କଟକ । ଆପଣଙ୍କ ପାଇଁ କଟକ ହୋଇଗଲା ମୋର ଦ୍ୱିତୀୟ ବାସସ୍ଥାନ ।

ଅଭୟ କୁମାର ଦଳାଇ
ସି.ଡ଼ି.ଏ. ସେକ୍ଟର-୯, କଟକ
ମୋ : ୯୪୩୭୨୯୬୧୧୫

•••

କମଳ ଅପାଙ୍କ ସହିତ ମୋର ପରିଚିତ ୧୯୭୦ ମସିହାରୁ । ଗିରିଜା ବାବୁ ଆଉ କମଳ ଅପାଙ୍କ ସହିତ ପିରଚିତ ପାରିବାରିକ ସମ୍ପର୍କରେ ପରିଣତ ହୋଇଥିଲା ।

କମଳ ଅପା ଥିଲେ ଅସାଧାରଣ ଧୀଶକ୍ତି ସମ୍ପନ୍ନ ବୈଜ୍ଞାନିକ ଏକ ସ୍ନେହମୟୀ ମହିଳା ଏବଂ ପୃଥିବୀର ସବୁଜ ପରିବେଶ ସୃଷ୍ଟି କରିବାରେ ଏକ ଅଗ୍ରଣୀ ସେନାପତି । ତାଙ୍କର ଅଧ୍ୟାପନା ବିଜ୍ଞାନକୁ ଲୋକପ୍ରିୟ କରିବା ପାଇଁ ତାଙ୍କର ସାମାଜିକ ଆନ୍ଦୋଳନ ସମାଜରେ ଚହଳ ସୃଷ୍ଟି କରିଥିଲା । ୟୁନିଭର୍ସକୁ ଗଢ଼ି ତୋଳିବାରେ ଗିରିଜା ବାବୁଙ୍କ ପ୍ରତି ତାଙ୍କର ସାହାଯ୍ୟ ଓ ସହଭାଗିତା ରାଜ୍ୟର ସାଂସ୍କୃତିକ କେନ୍ଦ୍ର ଭାବେ ଗଢ଼ି ତୋଳିଧରିଛି । ତାଙ୍କର ପରିବାର ପ୍ରତି କର୍ତ୍ତବ୍ୟ ଓ ବନ୍ଧୁମାନଙ୍କ ପ୍ରତି ସ୍ନେହ ସବୁବେଳେ ସ୍ମରଣୀୟହୋଇ ରହିବ ।

ଡାକ୍ତର ନିରଞ୍ଜନ ତ୍ରିପାଠୀ
ପ୍ରଫେସର ମେଡ଼ିସିନ୍
ଜୀବନବିକାଶ, ନିମସାହି-କଟକ
ମୋ - ୯୪୩୭୪୭୪୭୪୭

•••

କମଳ ମାମ୍ ଥିଲେ ମୋର ମାର୍ଗଦର୍ଶକ । ତାଙ୍କର ବିୟୋଗରେ ମୁଁ ମର୍ମାହତ । ତାଙ୍କ ଆତ୍ମାର ସଦ୍‌ଗତି ହେଉ, ଏହା ମୋର ସଦିଚ୍ଛା ।

ସୁକାନ୍ତ କିଶୋର ମହାନ୍ତ
ମୋ : ୯୪୩୭୪୯୦୫୬୪

•••

Ravenshaw Collegee
Fauna & Flora
'କମଳ ଅପା'
ଆଉ ନାହାନ୍ତି

ପୁତୁରା - ମୁନା

•••



# A BRIEF PROFILE

**Name :**

**Prof. Dr. (Mrs) Kamala Kumari Patnaik.**

**Designation :**

- Retired Professor & Head of the Department. Botany. Parija P.G. Department, Ravenshaw College. Cuttack
- Ex-Member, Orissa Public Service Commission. Government of Orissa.

**Present Address :**

7. Rastravasha Road,
P.O. Buxi Bazar,
Cuttack – 753001, Orissa.

**Date of Birth :**

9th January. 1936.

**Academic Qualification :**

- Ph.D from Allahabad University in 1962 on topic "Tartaric Acid metabolism in Tamarindus indiaca". Under the guidance of Professor Shri Ranjan.
- M.Sc in Botany from Ravenshaw college. Utkal University in 1959, with specialization in Plant Physiology and Biochemistry.
- Dip.in German language in 1961 from Allahabad University.

**Academic Achievements as a Ph.D scholar :**

- First Oriya lady to get a Ph.D degree.
- Discovered a new enzyme named "Tartaric recemase" from Tamarindus indica, which was published in international journal "Naturwissensaften (German)" in the year 1960.
- Had Ph.D degree in record time (less than three years).

**Academic Experience & Achievements :**

- About 31 years of teaching experience, including 12 years as professor in Botany, Parija P.G Department, Ravenshaw college, Cuttack.
- Under the guidance, fourteen Ph.D scholar and sixteen M.phil scholars got the degree.
- Under her supervision, thirty M.Sc scholars got dissertation degree.
- More than 180 papers published, both in national and international journal.

**Professional Experience :**

Was a member of Orissa Public Service Commission. Government of Orissa for 5 years (1993-1998).

**Research contribution after retirement from government service :**

- Under the guidance, four scholars got the Ph.D degree from Utkal University.
- Six more scholars about to get Ph.D degree.
- Carrying on research on Ethnbotany and Environmental Science.
- Special research activity on precious medicinal plants, especially used by tribal and non-tribal people of Orissa.
- Continuance of over thirty-five years of research on treatment of Bronchial asthma, Piles and Arthritis by identifying inherent properties of different medicinal plants, where many under privileged and marginalized section of the society have been benefited.

**Specific Contribution/Discoveries during Research :**

- As mentioned before, discovered a new enzyme named "Tartaric racemase" from Tamarindus indica.
- Was instrumental in discovering pseudomonas bacteria from aerobic soil of rice and sugarcane fields. which could degrade a poisonous pesticide – Hexachorocycle Hexane (HCH). It was highly acclaimed in many national and international journals.

**Contribution towards writing Books :**

Was an author to different types of valuable books as mentioned below.

- "Brukhya Latara Ausadhi Guna (Medicinal values of plants) – Three books in Oriya covering detailed analyses and application of around three hundred medicinal plants.
- "Man in Forest" – A book covering indigenous knowledge on forest, covering eight important tribes of Orissa. This book was an outcome of a project of eight years (1992-2000). The project was a cross cultural research network between the chair of forest policy of forest economics, Swiss Federal of institute of technology (FTH), the Deutch Gesllschaft fur Techniscehe Zusammemrbeit (GTH) and Council of Cultural Growth and Cultural Relations (CCGCR).
- "Evolution of life" for +3 Science, Ancillary course.
- Textbook for Degree course in Botany, prescribed by both Utkal University and Berhumpur University.
- Environmental Science for +3 Science degree course, published by test book Bureau, Government of Orissa.
- +2 Science Book on Botany, as prescribed by Council of Higher Secondary Education, Government of Orissa.
- Translated the book "Biology part II" by NCERT, through National Text book committee, was published by Board of Secondary Education, Government of Orissa.
- General Science (Biology) for class IX, by the NCERT, through Nationalized textbook committee.
- Text Books (General Science) for standard III, IV, V, VI, as prescribed by Board of Secondary Education, Government of Orissa.

**References of Research cited in different journals and periodicals :**

Valuable contribution in research work was referred in some of the following national and international journals and periodicals, as mentioned below :

- Die-pharmaziee (German).
- Physiologia Plantarum (Former Czechoslovakia).
- Die-pharmaziee (German).
- Physiologia Plantarum (Former Czechoslovakia).
- International journal of tradional Asian medicine (Australia).
- Appl. Environ Microbiol (Canada).
- Bull. Environ Contam. Texicol (USA).
- Naturwissensaften (German).
- Indian journal of plant physiology.
- Indian journal of nutritive value.
- Indian journal of nutritive diet.
- Proceedings of Science (Plant science).
- Plants science research, Orissa advancement of science.

**Participation in seminars, conferences of Academic nature :**

- Had visited China to study the flora and fauna of the country.
- Participated in a seminar on the auspicious occasion of woman year in Bhagalpur Univerisity, Bihar.
- Was technical member in an international seminar on "Man in the forest" at Delhi.
- Participated in an international seminar on "Buddhism and Jainism" in Orissa.
- Participated in an international seminar on "Societies in transition : Alternatives for the future" in Orissa.
- Participated and delivered lecture on "Environment and Twenty-First Century" in Orissa.
- Participated and delivered lecture on "Tribal culture in changing world" in Orissa.
- Attended and participated in paper reading in Indian science congress in ten different years.
- Attended many other memorial lectures of different eminent scientists.

**Organizing seminars and conferences while Professor of Botany (Academic) :**

As a Professor of Botany, Ravenshaw College. Was instrumental in organizing different seminars as mentioned below :

- Seminar on environmental awareness among botanists and plant lovers.
- Botanical association of Ravenshaw college.
- Seminar on environmental protection and afforestation.
- Orissa seminar on decasting the M.Sc and M.Phil (Botany) syllabus, as per UGC guideline and the need of the day.
- Weekly Parija seminar in Botany department (Annual Bulletin published in each in year).
- Annual conference of Orissa Botanical society.

**Member of Learned societies :**

As a botanist and herbal scientist, is a member of many societies as mentioned below :

- Biologiaplantarum (Former Czechoslovakia).
- Naturwissensaften (German).
- Diepharzie (German).
- Bull.Enviorn.Centam – Texicol (USA).
- Can.j.Microbiol (Canada).
- Appl.Environmicrobiol (American Academy of Science).
- Indian Acaemic of Science.
- Oryza Rice Research Institute, Orissa.
- Orissa Botanical Society.
- Orissa Bigyan Prachar Samiti.

**Extra curricular activities :**

- Writing popular science articles in periodicals. Daily newspapers to popularize science.
- Delivering talks on scientific topics on All India Radio at times.
- Participating in panel discussions on Ethno Botany in different TV programmes.
- Active participant in different plantation programmes.

◆◆◆


With Mrs. Indira Gandhi,
Indian Science Congress, Bhubaneswar


Byapti about to touch
Mrs. Indira Gandhi's feet



Birth Centenary of
Professor Pranakrushna Parija


A Happy Family


Department of Botany,
Ravenshaw College


Ordnance Factory, Ambarnath


Faculty Members, Botany,
Ravenshaw College


Daughter Pranjya's Marriage


Eventful 7, Rasthrabhasha Road


Pranjya's Marriage


Daughter Pranjya's Marriage


Beloved Sons


Beloved Elder Sister Tiki Apa and Other Family Members


Enjoying Nature With Better Half


With Younger Brother Abhaya Patnaik and His WIfe


Scientific Inquisitiveness


Nourishing a plant


Strolling through her garden


Abhijit and Sucharita's Wedding Reception


Son and Daughter-in-law


Family Members, Son's Marriage Reception


Grand Daughter, Barshana


Abhijit's In-laws


Gayatri's First Birthday


My Dear Barshana


With grand daughters


With daughter-in-law
Sucharita's mother, Indurekha

# University of Allahabad

**Certificate of Proficiency in** German

**This is to Certify that** Kamala Kumari Patnaik son/daughter of Sri U.N. Patnaik after completing the two years' Course in German prescribed by the University, passed the Examination for a Certificate of Proficiency in German held in the month of March, 1961.

The papers in which he/she was examined were :

(1) Translation of passages from German into English.

(2) Translation from English into German and Grammar and idiom.

He/she was also examined in Viva-Voce and Passed in the test.

University of Allahabad.

The 14th January 1962.

O.P. Gupta

REGISTRAR

# ଉତ୍କଳ ସାହିତ୍ୟ ସମାଜ





୧୦୪ ତମ ବାର୍ଷିକ ଉତ୍ସବ-୨୦୦୬

## ପ୍ରାଣକୃଷ୍ଣ ପରିଜା ବିଜ୍ଞାନ ସାହିତ୍ୟ ସମ୍ମାନ

ଡକ୍ଟର ଶ୍ରୀମତୀ କମଳ କୁମାରୀ ପଟ୍ଟନାୟକ ମହୋଦୟାଶୁ

ମହାଶୟା,

[illegible]

ଉତ୍କଳ ସାହିତ୍ୟ ସମାଜ

ସାଧାରଣ ସମ୍ପାଦକ | ମୁଖ୍ୟ ଅତିଥି | ସଭାପତି

# UNIVERSITY OF ALLAHABAD




## Doctor of Philosophy in Science

This is to certify that Km. Kamala Kumari Patnaik

has been admitted to the degree of Doctor of Philosophy in Science in this University at the Convocation of 1962

University of Allahabad: Vice-Chancellor.

The [illegible] December 1962.

# Utkal University




DIPLOMA FOR MASTER OF SCIENCE

*This is to Certify that*

*Kamala Kumari Patnaik*

*of Ravenshaw College, Cuttack.*

*who passed the examination for the degree of*

**Master of Science**

*held in the month of June, 1959, and was placed in the First Class in Botany was this day admitted to the degree.*

UTKAL UNIVERSITY,
CUTTACK.
The 6 th December, 1959.

Vice-Chancellor.

# INNER WHEEL CLUB OF CUTTACK SILVER CITY

## DISTRICT- 326






To

Dr.(Mrs.) Kamal Kumari Patnaik

Former Professor and Head of the Department of Botany 5th September, 2013

Ravenshaw College, Cuttack

Respected madam,

Men may come, men may go, but you as a teacher go on for ever. You enlighten and inspire your students in a way mothers nourish their children. We know Madam, the smell of flowers move in the direction of the wind but the smell of a good teacher like you overwhelmingly flows in all directions. Your achievements as the Professor of Botany as well as the Member of the Odisha Public Service Commission remains in golden letters in the history of academia in the state of Odisha.

On this auspicious occasion of Teacher's Day, the 5th September' 2013 the Members of the Inner Wheel Club of Cuttack Silver City take this privilege to felicitate you and take blessings from you.

We pray God for your healthy long life.

Dr. Rita Das
President

M. C. Maharana
Mrs. Madhu Chhanda Maharana
Secretary

# ଡ଼ଃ ହରିହର ପଟ୍ଟନାୟକ ସ୍ମୃତି ସଂସଦ, କଟକ



## ଡ଼ଃ ହରିହର ପଟ୍ଟନାୟକ ସ୍ମାରକୀ ସମ୍ମାନ-୨୦୦୬

ମାନନୀୟା **ଡ଼କ୍ଟର କମଳ କୁମାରୀ ପଟ୍ଟନାୟକ**

ବିଶିଷ୍ଟ ଉଦ୍ଭିଦବିଜ୍ଞାନବିତ୍

ମହାଶୟା,

ଉଦ୍ଭିଦବିଜ୍ଞାନରେ ଗବେଷଣା କରି ଆପଣ ପ୍ରଭୂତ ଯଶ ଓ ଗୌରବର ଅଧିକାରୀ ହୋଇପାରିଛନ୍ତି। ପି.ଏଚ୍.ଡ଼ି. ଡ଼ିଗ୍ରୀ ଲାଭ କରିବାରେ ଆପଣ ହେଉଛନ୍ତି ରାଜ୍ୟର ପ୍ରଥମ ମହିଳା। ଉଦ୍ଭିଦ ବିଜ୍ଞାନରେ ଗବେଷଣା ପାଇଁ ଆନ୍ତର୍ଜାତିକ ସ୍ତରରେ ସୁଖ୍ୟାତି ଅର୍ଜନ କରିବା ସହ ବିଜ୍ଞାନକୁ ଲୋକପ୍ରିୟ କରିବାରେ ଆପଣଙ୍କ ଉଦ୍ୟମ ପ୍ରଶଂସନୀୟ। ଆପଣଙ୍କ ରଚିତ 'ବୃକ୍ଷଲତାର ଔଷଧି ଗୁଣ', 'ଜଙ୍ଗଲରେ ମନୁଷ୍ୟ' ଓ ବହୁ ବିଜ୍ଞାନ ସମ୍ବନ୍ଧୀୟ ପୁସ୍ତକ ପାଠକଙ୍କ ନିକଟରେ ଅବିସ୍ମରଣୀୟ। ଆପଣଙ୍କ ଅଧୀନରେ ଗବେଷଣା କରି ବହୁ ଛାତ୍ରଛାତ୍ରୀ ପି.ଏଚ୍.ଡି. ଡ଼ିଗ୍ରୀ ଲାଭ କରି ଉଚ୍ଚ ପଦପଦବୀରେ ଅଧିଷ୍ଠିତ ହୋଇପାରିଛନ୍ତି। ଆପଣଙ୍କ ବହୁ ବିଜ୍ଞାନଭିତ୍ତିକ ପ୍ରବନ୍ଧ ଜାତୀୟ ତଥା ଆନ୍ତର୍ଜାତୀୟ ପତ୍ରିକାରେ ପ୍ରକାଶିତ ହୋଇ ବିଜ୍ଞାନ କ୍ଷେତ୍ରରେ ଆପଣଙ୍କ ସମ୍ମାନ ଯଥେଷ୍ଟ ବୃଦ୍ଧି କରିପାରିଛି।

ଆପଣଙ୍କ ବୈଜ୍ଞାନିକ ପ୍ରତିଭାକୁ ସମ୍ମାନ ଜଣାଇ 'ଡକ୍ଟର ହରିହର ପଟ୍ଟନାୟକ ସ୍ମୃତି ସଂସଦ' ଆପଣଙ୍କୁ ଡକ୍ଟର ହରିହର ପଟ୍ଟନାୟକ ସ୍ମାରକୀ ସମ୍ମାନ-୨୦୦୬ ଦେଇ ନିଜକୁ ଗୌରବାନ୍ୱିତ ମନେ କରୁଛି। ଆପଣ ଦୀର୍ଘାୟୁ ହୋଇ ଏହି ଭଳି ବିଜ୍ଞାନ ସାଧନାରେ ଆଗେଇ ଚାଲନ୍ତୁ ; ଏହା ହିଁ ଆମ ସମସ୍ତଙ୍କ ହାର୍ଦ୍ଦିକ କାମନା।

ମୁଖ୍ୟ ଅତିଥି
ଶ୍ରୀଯୁକ୍ତ ବିବୁଧେନ୍ଦ୍ର ମିଶ୍ର

ଓଡ଼ିଆ ଭବନ, କଟକ
ତା ୨୨.୧୧.୦୬ ରିଖ

ସଭାପତି
ପ୍ରଫେସର ହୃଦାନନ୍ଦ ରାୟ

## ଅଧ୍ୟାପିକାଙ୍କ କୃତିତ୍ୱ



କଟକ, ତା ୧୨।୧୨— ଓଡ଼ିଆ ଛାତ୍ରୀ କମଳକୁମାରୀ ପଟ୍ଟନାୟକ ଆଲ୍ଲାହାବାଦ ବିଶ୍ୱବିଦ୍ୟାଳୟରୁ ଡି, ଫିଲ୍ ଡିଗ୍ରୀ ପାଇବା ପାଇଁ ଯୋଗ୍ୟ ବିବେଚିତ ହୋଇଛନ୍ତି । ଚଳିତ ମାସର ଆଗାମୀ ୧୫ ତାରିଖ ଦିନ ଆଲ୍ଲାହାବାଦ ବିଶ୍ୱବିଦ୍ୟାଳୟ ସମାବର୍ତ୍ତନ ଉତ୍ସବରେ ତାଙ୍କୁ ଏହି ଡିଗ୍ରୀ ପ୍ରଦାନ କରାଯିବ । ଉଦ୍ଭିଦ ବିଜ୍ଞାନରେ ଗବେଷଣା କରି ଏହି ଡି, ଫିଲ ଡିଗ୍ରୀ ଲାଭ କରିବାରେ ସେ ହେଉଛନ୍ତି ପ୍ରଥମ ଓଡ଼ିଆ ଝିଅ । ତାଙ୍କ ଗବେଷଣାର ବିଷୟବସ୍ତୁ ହେଉଛି "ଟାଟାରିକ ଏସିଡ଼ ମେଟାବୋଲିଜମ୍ ଇନ ଟାମାରିଣ୍ଡସ୍ ଇଣ୍ଡିକା" ତାଙ୍କର ଏ ସଂକ୍ରାନ୍ତ ଗବେଷଣାମୂଳକ ପ୍ରବନ୍ଧ ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ଉଦ୍ଭିଦବିଜ୍ଞାନୀ ଇଂଲଣ୍ଡର ଅଧ୍ୟାପକ ଡବ୍ଲ୍ୟୁ, ଓ, ଜେମେସ ଏବଂ ଅଧ୍ୟାପକ ବେନେଟ କ୍ଲାର୍କଙ୍କ ଦ୍ୱାରା ଭୂରି ପ୍ରଶଂସିତ ହୋଇଛି । କମଳକୁମାରୀ ପଟ୍ଟନାୟକ ଏଲ୍ଲାହାବାଦ ଭୂତପୂର୍ବ କୁଳପତି ଅଧ୍ୟାପକ ବିଶ୍ୱବିଦ୍ୟାଳୟର ଶ୍ରୀ ରଞ୍ଜନଙ୍କ ଅଧୀନରେ ରହି ଗବେଷଣା କରୁଥିଲେ । ସେ ୧୯୫୯ ମସିହାରେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ପ୍ରଥମ ଶ୍ରେଣୀରେ ଏମ, ଏସ, ସି, ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲା ପରେ ଆଲ୍ଲାହାବାଦ ବିଶ୍ୱବିଦ୍ୟାଳୟରେ ଗବେଷଣା କରୁଥିଲେ । ଆଲ୍ଲାହାବାଦ ବିଶ୍ୱବିଦ୍ୟାଳୟର ଉଦ୍ଭିଦବିଜ୍ଞାନ ବିଭାଗ ଇତିହାସରେ ଏ ଧରଣର ଗବେଷଣା କରି ସେ ଏକ ନୂତନ ଦୃଷ୍ଟାନ୍ତ ସ୍ଥାପନ କରିଛନ୍ତି । ସେ ବର୍ତ୍ତମାନ ଶୈଳବାଳା ମହିଳା କଲେଜର ଉଦ୍ଭିଦବିଜ୍ଞାନ ବିଭାଗର [illegible]ନ୍ତି ।

**SAMAJA NEWS PAPER**
**13.12.1962**

# MissK.K.Patnaik To Get D. Phil

(By A Staff Reporter)

CUTTACK, Dec. 17.—Miss Kamala Kumari Patnaik, Lecturer of Botany in Sailabala Women's College, has been selected for a D.Phil degree from the Allahabad University this year.

Her thesis on: 'Tartaric Acid metabolism in Tamarindus Indica' has received high commendations from famous Botanists like Dr. W. O. James and Prof. Bennet Clark of U. K. She will be the first Oriya girl to receive a D.Phil. degree in Science.

After completing M.Sc. at Utkal University in the year 1959, Miss Patnaik conducted research under Dr. Rajan the then Vice-Chancellor of Allahabad University. She was also awarded a Fellowship from the Council of Scientific and Industrial Research, Government of India.

She is the daughter of late Mr. Udayanath Patnaik and a neice of Mr. Biju Patnaik, the Chief Minister of Orissa. The desires to conduct research on the Herbal Plants of Orissa and establish an independent laboratory for that purpose. She holds a diploma in German [illegible]guage.

**EASTERN TIMES**
**18.12.1962**

## ଓଡ଼ିଆ ଛାତ୍ରୀଙ୍କ କୃତିତ୍ୱ

କଟକ, ୧୪।୧୨— କୁମାରୀ କମଳକୁମାରୀ ପଟ୍ଟନାୟକ [illegible] ଆଲ୍ଲାହାବାଦ ବିଶ୍ୱବିଦ୍ୟାଳୟରୁ ଉଦ୍ଭିଦ ବିଜ୍ଞାନରେ ଡ଼ଃ ଫିଲ୍ଃ ଡିଗ୍ରୀ ପାଇବା ପାଇଁ ଯୋଗ୍ୟ ବିବେଚିତ ହୋଇଛନ୍ତି "Tartaric Acid Metabolism in Tamarindus indica" ଉପରେ ତାଙ୍କର ପ୍ରବନ୍ଧ [illegible] ଡ଼ଃ ଜେମସ ଏବଂ ଅଧ୍ୟାପକ ବେନେଟ କ୍ଲାର୍କଙ୍କ ଦ୍ୱାରା ଉଚ୍ଚ ପ୍ରଶଂସିତ ହୋଇଅଛି ।

ବିଜ୍ଞାନରେ ଡ଼. ଫିଲ୍, ଡିଗ୍ରୀ ଲାଭ କରିବାରେ ସେ ପ୍ରଥମ ଓଡ଼ିଆ ଝିଅ । ଏହାଛଡ଼ା [illegible]



[illegible] (enzyme) ଆବିଷ୍କାର କରିଛନ୍ତି । ଆଲ୍ଲାହାବାଦ ବିଶ୍ୱବିଦ୍ୟାଳୟର ଉଦ୍ଭିଦ ଶାସ୍ତ୍ରତତ୍ତ୍ୱ ଗବେଷଣାଗାରରେ ଏହା ପୂର୍ବରୁ କେହି ଆବିଷ୍କାର ହୋଇ ନ ଥିଲା ।

**PRAJATANTRA**
**16.12.1962**




### ୫୮ତମ ବାର୍ଷିକୋତ୍ସବ - ୨୦୦୭

## ବିଜ୍ଞାନ ପ୍ରଚାର ସମିତି ସମ୍ମାନ

## ପ୍ରଫେସର ଡକ୍ଟର ଶ୍ରୀମତୀ କମଳ କୁମାରୀ ପଟ୍ଟନାୟକ ମହାଶୟା

ବରେଣ୍ୟା,

ଉଦ୍ଭିଦବିଜ୍ଞାନ ବିଷୟରେ ଅଧ୍ୟୟନ, ଅଧ୍ୟାପନା ଓ ମୌଳିକ ଗବେଷଣା କ୍ଷେତ୍ରରେ ଆପଣଙ୍କର ଯୋଗଦାନ ମହତ୍ତ୍ୱପୂର୍ଣ୍ଣ । ନିରଳସ ଉଦ୍ୟମ, ନୀରବଚ୍ଛିନ୍ନ ଅଧ୍ୟବସାୟ, ନୀରବ ସାଧନା ଓ ନିରନ୍ତର ଗବେଷଣା ପାଇଁ ଆପଣ ସତୀର୍ଥ, ସମକକ୍ଷ ଓ ଛାତ୍ରମାନଙ୍କର ଶ୍ରଦ୍ଧାନୁରାଗଭାଜନ ହୋଇଛନ୍ତି ।

ରେଭେନ୍ସା ମହାବିଦ୍ୟାଳୟରେ ଦୀର୍ଘକାଳ ଅଧ୍ୟାପନା କରି ଅବସର ଗ୍ରହଣ ପରେ ଆପଣ ଉଦ୍ଭିଦବିଦ୍ୟା ସମ୍ପର୍କରେ ଗବେଷଣା ଅବ୍ୟାହତ ରଖିଛନ୍ତି । ତା'ର ଫଳଶ୍ରୁତି ହେଉଛି- 'ଉଦ୍ଭିଦର ଔଷଧି ଗୁଣ' ପରି ମୌଳିକ ଗ୍ରନ୍ଥ । ବିଜ୍ଞାନକୁ ଲୋକପ୍ରିୟ ଓ ଗ୍ରହଣୀୟ କରିବାରେ ଆପଣଙ୍କର ନିଷ୍ଠାପର ଉଦ୍ୟମ ଅନସ୍ୱୀକାର୍ଯ୍ୟ ।

ଓଡ଼ିଶା ଲୋକସେବା ଆୟୋଗର ସଭ୍ୟା ଭାବରେ ଆପଣ ନିଜର ପ୍ରଶାସନିକ ଦକ୍ଷତାର ପ୍ରମାଣ ଦେଇଛନ୍ତି । ବିବିଧ ଉଦ୍ଭିଦ ଉପରେ ଗବେଷଣା କରି ଶ୍ୱାସରୋଗର ପ୍ରତିଷେଧକ ଉଦ୍ଭାବନ ଆପଣଙ୍କର ଅନନ୍ୟ ପ୍ରତିଭାର ଯଥାର୍ଥ ପରିଚାୟକ ।

ହେ ମନସ୍ୱିନି ! ବିଜ୍ଞାନ କ୍ଷେତ୍ରକୁ ଆପଣଙ୍କର ଅବଦାନର ସ୍ୱୀକୃତି ସ୍ୱରୂପ ଆପଣଙ୍କୁ ଚଳିତ ବର୍ଷର **'ବିଜ୍ଞାନ ପ୍ରଚାର ସମିତି ସମ୍ମାନ'**ରେ ଭୂଷିତ କରି ଆମେମାନେ ନିଜକୁ ଧନ୍ୟ ମନେ କରୁଅଛୁ ।

ସମ୍ପାଦକ — ସଭାପତି

# GOLDEN JUBILEE CELEBRATION

## P.G. DEPARTMENT OF BOTANY

(1949-1999)

RAVENSHAW COLLEGE (AUTONOMOUS), CUTTACK



# Felicitation
# to
# Professor (Mrs.) Kamal Kumari Patnaik

*Esteemed Sir,*

*We feel greatly honoured to felicitate you on this auspicious occasion of the Golden Jubilee Celebration. As a doyen of research and as an excellent teacher, you have inscribed your name in the annals of academics. Enjoying global reputation, you are the source of inspiration for dynamic and progressive learning. You have been a catalyst to activate students and scholars, harvesting rich knowledge in plant sciences.*

*While expressing our deep sense of reverence and gratefulness, we pray the Almighty for the total fruition of your innate talent and to bestow upon you peace, prosperity and happiness.*

*With regards.*

*Yours*

*Alumni*

P.G. DEPARTMENT OF BOTANY

Ravenshaw College, (Autonomous)
Dt. 18.02.2001

# ପ୍ରଥମ ଡାକ୍ତରୀ ଓଡ଼ିଆ ଝିଅ

କୁମାରୀ କମଳକୁମାରୀ ପଟ୍ଟନାୟକ ଚଳିତବର୍ଷ ଅଲ୍ଲାହାବାଦ ବିଶ୍ୱବିଦ୍ୟାଳୟରୁ ଡି. ଫିଲ ଉପାଧି ପାଇବା ପାଇଁ ଯୋଗ୍ୟ ବିବେଚିତ ହୋଇଛନ୍ତି । ଉକ୍ତ ବିଶ୍ୱବିଦ୍ୟାଳୟରୁ ଏଭଳି କୃତିତ୍ୱ ହାସଲ କରିବାରେ କୁମାରୀ ପଟ୍ଟନାୟକ ପ୍ରଥମ ଓଡ଼ିଆ ଛାତ୍ରୀ । ତାଙ୍କ ପୂର୍ବରୁ ଏପର୍ଯ୍ୟନ୍ତ କେହି ଓଡ଼ିଆ ଛାତ୍ରୀ ଡି. ଫିଲ୍ ଉପାଧି ପାଇ ନ ଥିଲେ । "Tartaric Acid plant metabolism on Tamarindus Indica" ଉପରେ ତାଙ୍କର ସନ୍ଦର୍ଭ ପୃଥିବୀ ପ୍ରସିଦ୍ଧ ବୈଜ୍ଞାନିକ ଡକ୍ଟର ଡବ୍ଲ୍ୟୁ. ଓ. ଜେମସ୍ ଓ ପ୍ରଫେସର ବେନେଟ କ୍ଲାର୍କଙ୍କ ଦ୍ୱାରା ଉଚ୍ଚ ପ୍ରଶଂସା ଲାଭ କରିଛି । ଆଲ୍ଲାହାବାଦ ବିଶ୍ୱବିଦ୍ୟାଳୟ ଉଦ୍ଭିଦ ବିଜ୍ଞାନ ଗବେଷଣାଗାରରେ ଏକ ସ୍ୱତନ୍ତ୍ର ଦ୍ରାବକ (Enzyme) ଆବିଷ୍କାର କରିବାରେ, ସେ ପ୍ରଥମ ଗବେଷକ ।

କୁମାରୀ କମଳକୁମାରୀ ପଟ୍ଟନାୟକ ୧୯୫୫ ମସିହାରେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ଉଦ୍ଭିଦ ବିଜ୍ଞାନରେ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇଥିଲେ । ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ଡକ୍ଟର ପରିଜାଙ୍କର ଅନୁମୋଦନ କ୍ରମେ ସେ ଅଲ୍ଲାହାବାଦ ବିଶ୍ୱବିଦ୍ୟାଳୟର ତତ୍କାଳୀନ କୁଳପତି ଡକ୍ଟର ଶ୍ରୀ ରଞ୍ଜନଙ୍କ ଅଧୀନରେ ଗବେଷଣା କରୁଥିଲେ । କେନ୍ଦ୍ର ସରକାରଙ୍କର ବୈଜ୍ଞାନିକ ଓ ଶିକ୍ଷା ଗବେଷଣା କାଉନ୍ସିଲର ଏକ ଫେଲୋସିପ ପାଇବା ପାଇଁ ସେ ସମର୍ଥ ହୋଇଥିଲେ ।

ବର୍ତ୍ତମାନ କୁମାରୀ ପଟ୍ଟନାୟକ ଶୈଳବାଳା ମହିଳା କଲେଜର ଉଦ୍ଭିଦ ବିଜ୍ଞାନରେ ଅଧ୍ୟାପିକା ଏବଂ କଲେଜର ଏନ. ସି. ସି. ୟୁନିଟର ସାଇଫଲ କମାଣ୍ଡର ହେବାପାଇଁ ମନୋନୀତ ହୋଇଛନ୍ତି ।

କୁମାରୀ ପଟ୍ଟନାୟକ କଲେଜରେ ପ୍ରବେଶ କରିବାର ଅଳ୍ପଦିନ ମଧ୍ୟରେ ତାଙ୍କର ବିରାଟ ପରିବାରର ଏକମାତ୍ର ଭରଣ ପୋଷଣକାରୀ ପିତାଙ୍କୁ ହରାଇଥିଲେ ଏବଂ ବହୁ କଷ୍ଟରେ ସେ ଆପଣାକୁ ଉଚ୍ଚଶିକ୍ଷା ଦେବାପାଇଁ ସମର୍ଥ ହୋଇଛନ୍ତି ।

ଭାରତ ବାହାରେ ଉଚ୍ଚଶିକ୍ଷା ପାଇଁ ଆଶାପୋଷଣ କରିବା ସଙ୍ଗେ ସଙ୍ଗେ ଓଡ଼ିଶାର ଭେଷଜ ଉଦ୍ଭିଦ ଉପରେ ଗବେଷଣା କରିବା ପାଇଁ ସେ ଆଶାପୋଷଣ କରନ୍ତି ।

KALINGA NEWS PAPER
21.12.1962

## କମଳକୁମାରୀ ପଟ୍ଟନାୟକଙ୍କ ପରଲୋକ

[illegible]

## ପ୍ରଫେସର କମଳକୁମାରୀ ପଟ୍ଟନାୟକଙ୍କ ପରଲୋକ

କଟକ, ୨୭/୧୨(ଇମିସ): ଓଡ଼ିଶା ଲୋକସେବା ଆୟୋଗ (ଓପିଏସସି)ର ପୂର୍ବତନ ସଦସ୍ୟ, ଉଦ୍ଭିଦବିଜ୍ଞାନ ବିଭାଗର ଅବସରପ୍ରାପ୍ତ ପ୍ରଫେସର, ଲୋକପ୍ରିୟ ବିଜ୍ଞାନ ଲେଖକ ଡକ୍ଟର କମଳ କୁମାରୀ ପଟ୍ଟନାୟକ (୮୩)ଙ୍କର ପରଲୋକ ଘଟିଛି। କିଛି ବର୍ଷ ହେଲା ସେ ବାର୍ଦ୍ଧକ୍ୟଜନିତ ରୋଗରେ ପୀଡ଼ିତ ଥିଲେ। ଆଜି ଅପରାହ୍ନ ସାଢ଼େ ୩ଟାରେ ତାଙ୍କର ପରଲୋକ ଘଟିଥିଲା। ଶେଷ ସମୟରେ ପୁଅ ବାପ୍ପି ପଟ୍ଟନାୟକ, ଝିଅ ପ୍ରୀତି ଓ ନାତୁଣୀ ବର୍ଷା ପ୍ରମୁଖ ଉପସ୍ଥିତ ଥିଲେ।

[illegible]

ଓଁ ଗଙ୍ଗା

[illegible]

OUR CONTRIBUTORS

◆◆◆

## ଜୀବନର ଅପରାହ୍ନରେ ଗୁଣୁ ଗୁଣୁଉଥିବା କବିତା

ବହିଯାଉଅଛି ସମୟର ସ୍ରୋତ ।
ସୁକର୍ମ ତହିଁରେ ଏକ ମାତ୍ର ପୋତ ॥
ବନ୍ଧାଥାଏ ତହିଁ ନାବିକ କ୍ଷେପଣି ।
ଚାଳେ ଏକାଗ୍ରରେ ନାବିକ ତରଣୀ ॥
ବସାଏ ସେ ମାଝି କର୍ମଠ ପଝାରି ।
କର୍ମକୁଣ୍ଠ ଯାତ୍ରୀ ନକରଇ ପାରି ॥
ଘୁରି ଘୁରି ଘୁରି ହୋଇ ସନ୍ତାପିତ ।
ଅଚଳେ ଲୁଚନ୍ତି ସରବେ ତୁହି ତ ॥
ମାତ୍ର ଯିଏ ଦୃଷ୍ଟି ରଖେ ଏକା ।
ତାର ଶିର ହୁଏ ଶିବ ପାଲ ଟେକା ॥